# ଆମ ଭାଷା ବୈଭବ




ଶ୍ରୀ ଶତ୍ରୁଘ୍ନ ନାଥ, ଏମ୍. ଏ. (ଲଣ୍ଡନ)

# ଆମ ଭାଷା ବିଭବ




ଲେଖକ

ଶ୍ରୀ ଶତ୍ରୁଘ୍ନ ନାଥ, ଏମ. ଏ. (ଲଣ୍ଡନ)

ଅଧ୍ୟକ୍ଷ, ବେସିକ୍ ଟ୍ରେନିଂ କଲେଜ, ଅନୁଗୁଳ



ପ୍ରଥମ ମୁଦ୍ରଣ

୧୯୫୯

ପ୍ରକାଶକ

କଟକ ଟ୍ରେଡିଂ କମ୍ପାନୀ

କଟକ—୨

# ସୂଚିପତ୍ର

---

# ମୁଖବନ୍ଧ

"ଆମ ଦେଶ ଗରିବ" ଏକଥା ସତ; ଏ ସୂଅରେ ମାତ୍ର ଆମେ କହିପକାଉଁ, "ଆମ ଭାଷା ଗରିବ", "ଆମ ମନ ଗରିବ", "ଆମର ସବୁ କଥା ହୀନ ହୀନ, ହୀନମାନିଆ" । ଏସବୁ କେମିତି କେଜାଣି ଆମ ହାଡ଼ସୁଦ୍ଧା ହୋଇଗଲାଣି । ସେତିକି ନୁହେଁ, ବେଳେ ବେଳେ ଅଭି ବ ଉଠିଲାଣି । ଲୋକେ ତ କହୁଛନ୍ତି; ଆମେ କହି ନ ଜାଣି କଥା ସୁନ୍ଦର କରିପାରୁ ନାହିଁ । କୁଣ୍ଡାଇ ନ ଜାଣି ଆମ ମଥା ସୁନ୍ଦର କରିପାରୁ ନାହିଁ । ଆମର କଥା ଅଛି, ମଥା ବି ଅଛି ।

ଆଗ ମଥା, ତା' ପରେ କଥା । ମନୁଷ୍ୟର ପାଟି ଫିଟିଲା କେବେ ଠିକ୍ କହିବା ସହଜ ନୁହେଁ । ମଥାଟି ଜନ୍ମରୁ ରହିଛି । କିଛିଦିନ ପରେ ପିଲା ପାଟି ପାକୁ ପାକୁ କରେ । ମଥା ଭିତରୁ ଭାବ ତାକୁ ଠେଲେ ଓ ପେଲେ । ସେ କହିବାକୁ ବିକଳ ହୁଏ । ପାଟି ଫିଟିଲେ ଭାଷା ଜନ୍ମିଲା । ଏହି ପାଟିଫିଟା ଭାଷା ଆମର ବହୁତ ଧନର । ବହୁତ କଥା ଅଛି । କହିବାର ଠାଣି ଅନେକ ଅଛି । ଆମ ଭାଷାର ପାହିଆ ଖୁବ୍ ଉଚ୍ଚରେ ।

ବହିରେ କେତେ କଥା ଅଛି । କେତେ ଲୋକ ବହି ଲେଖିଛନ୍ତି । କେତେ ଖଣ୍ଡ ବହି ବି ଲେଖା ଯାଇଛି । ଅନେକ ଲୋକ ଅଛନ୍ତି । ସେମାନେ ସମସ୍ତେ ବହି ଲେଖି ନାହାନ୍ତି; କିନ୍ତୁ

ସମସ୍ତେ ସ୍ୱଭି ଭିନ କଥା କହୁଛନ୍ତି । ଏଇଥିରେ ଆମ ଭାଷା ରହିଛି । କେତେ ବଡ଼ିଆ ମଥାରୁ ଭଲ କଥା ବାହାରୁଛି । ଯାନଯାତ୍ରା, ନାଟଚାମସା ଓ ହସଖେଳରେ କେତେ କଥା କୁହାଯାଉଛି । ହାଟରେ, ବାଟରେ, ମଠରେ, ଭୁଠରେ ଓ ଖଟରେ କଥା ଛୁଟି ଚାଲିଛି । ହେଁସ ଚଳେ, ବେଣା ମୂଳେ, ଗାଈଜଗାଳେ ଓ ଖିଆପିଆରେ ଆମର ଅସୁମାର କଥା ରହିଛି । ସବୁ କଥାରେ ତ ବହି ଲେଖାଯାଇ ନାହିଁ, ସମସ୍ତେ ତ ବହି ଲେଖି ନାହାନ୍ତି । କେତେ ବଣମଲ୍ଲୀ ବଣରେ ଝଡ଼ି ପଡ଼ୁଛି । ଏସବୁ କଥା କହିବା ଲୋକ ଭୁଣ୍ଡରେ ବନ୍ଦ ହୋଇଯିବ । ଆମେ ତ ପରର ଗୋଟାଇ ଆସି ତୋଟା ମୂଲ୍ କରିବା କାହିଁକି ? କିନ୍ତୁ ଲୋକ ମୁହଁରେ ଭାଷା ଓ ଭାବ ରହିଛି । ଏହାର କଳନା କରି ହେବ ନାହିଁ ।

କାନ ଡେରି ଶୁଣିବା ଦରକାର । ଆମ ଭାଷାରେ ଅମାପ ଦୌଲତ ପୂରି ରହିଛି । ଏଥିରେ ଥିବା ଦୁଧ କଦଳୀ ଆମେ ଥୁ ଥୁ କରି ଦେଉଛୁ ; କିନ୍ତୁ କହୁଛୁ, "ଆମ କଥା ଓ ମଥା ଗରିବ ।" ଫକୀରମୋହନ, ଗୋପାଳଚନ୍ଦ୍ର ଆଦି କେତେକ ଜଣ ଏଥିର ସୁଆଦ ପାଇଥିଲେ । ଆମେ ଏସବୁ ଚାଖିବା ଦରକାର ଓ ଆମ ପିଲାଙ୍କୁ ଚଖାଇବା ଦରକାର ।

He comes of a rich family. He has come round. ଇତ୍ୟାଦି ବାକ୍ୟ ଇଂରାଜୀ ପଢ଼ୁଆ ପିଲାଏ ଶିଖନ୍ତି । ସେତିକି ବେଳେ ତାଙ୍କ ପାଟିରୁ ଲାଳ ବହେ । come ମାନେ ଆସିବା, ଫେରି come of ଅର୍ଥ ଜନ୍ମ ହେବା ଓ come round ଅର୍ଥ ଆରୋଗ୍ୟ ହେବା ଦେଖି ସେମାନେ ତାଜୁବ୍ ହୁଅନ୍ତି । କଥା କହିବା ଢଙ୍ଗ ଚାଖନ୍ତି । ଟକରା ପିଲା ଖଟା ଖାଇ ଟାକରା ମାରନ୍ତି । ଆପେ ଆପେ

ଜଭ ଓଲଟି ପଡ଼େ । ଟାକଗ୍ରାମରରେ ଖୁସି ପାଆନ୍ତି । ଇଂରାଜୀ-ପଢ଼ୁଆ ପିଲା ଠିକ୍ ସେଇଆ କରନ୍ତି । କପର come of ଓ come round କଥାରେ ଲଗାଇବେ ସେଥିପ୍ରତି ନଜର ରଖନ୍ତି । ବେଳେ ବେଳେ ସ୍ଥାନ, ଅସ୍ଥାନ ମଧ୍ୟ ବାରନ୍ତି ନାହିଁ । କାରଣ ସେମାନେ ଏହାକୁ ବୁଝିଥାନ୍ତି ଓ ଏହା ସେମାନଙ୍କ ମନକୁ ପାଇଥାଏ ।

ଆମ ଭାଷାରେ ସେହିପରି ଓଡ଼ିଆ ଢଙ୍ଗ ଅନେକ ଅଛି । "ବଇଦ ମତେ ହାତ ଦେଖିଲେ, ଜ୍ୟୋତିଷ ମୋ ହାତ ଦେଖିଲେ, ଇନ୍‌ସପେକ୍ଟର ସ୍କୁଲ ଦେଖିଲେ" ଏକା କଥା ନୁହେଁ । "ଗିନାରେ ତେଲ ଧରିବ ନାହିଁ, ଗଛରେ ଫଳ ଧରିବ ନାହିଁ, ଏ ଔଷଧ ଏହି ରୋଗକୁ ଧରିବ ନାହିଁ, ସେ ହାକିମଙ୍କୁ ଧରିଛି, ତାକୁ ନିଶା ଧରିଲାଣି, ସେ ଝିଅ ବାହାଘର ପାଇଁ ଜିଦ ଧରିଲେ" ଏହିସବୁ ଆମର ଅସୁମାରି ଧନ । 'ଛତୁଉଠା କାଠ, ନିଶଉଠା ପାଠ; ଅଦିନ ବରଷା, ମାଟନ୍ନେଲ ଭାଷା; ମାଟର କଥା, କଉଁଛର ମଥା; ବାଳିର ବନ୍ଧ, ଖଳର ପ୍ରୀତି; ବନ୍ଧ ଗଲେ ଗୁଷ, ବନ୍ଧୁ ଗଲେ ବାପ; ଏହିସବୁ ଠାଣି ଭାବ ଓ ଭାଷାର ବିଭବ ଅନେକ ଅଛି । ଖୋଜ ହାହାର କରିବା ଦରକାର । ଏ ଜିନିଷ ଯଦି ଆମ ପିଲାଙ୍କୁ ଚଖା ଯାଆନ୍ତା, ସେମାନଙ୍କ ଦେହ ଜଲ୍‌ସି ଉଠନ୍ତା, ଗୁଡ଼ି କୁଣ୍ଡେ ମୋଟ ହୁଅନ୍ତା, ଲଙ୍ଗଳ ଦଉଡ଼ି ପାଆନ୍ତା ନାହିଁ । ତେବେ ଯିନା ସେମାନେ ଆମ ଦେଶର ଓ ଜାତିର ଏ ରତ୍ନ ବୁଝନ୍ତେ ।

ଆମେ ତଳକୁ ଅନାଉ ନାହିଁ । ଆମେ ପଦ୍ମଫୁଲକୁ ନ ଗୁହିଁ କେବଳ ପଙ୍କ ପୋଖରି ଦେଖୁଛୁ । ଫଳରେ ଆମକୁ ଦୂର ପର୍ବତ ସୁନ୍ଦର ହେଉଛି । ଇଂରେଜୀ ଭାଷାକୁ ତାରିଫ୍ କରୁଛୁ ।

ଆମ ନିଜ ଭାଷାକୁ ବୁଝୁ ନାହୁଁ । ଗୋଲାପ ଫୁଲର ମହକରେ ଭୁଲି ଆମେ ଆମ ମଲ୍ଲିଫୁଲର ବାସନାକୁ ପସନ୍ଦରୁ ନାହୁଁ । ଫଳରେ କହୁଛୁଁ ଆମ ଭାଷା ତ କେବେହେଲେ ଇଂରାଜୀ ପରି ନୁହେଁ, ହିନ୍ଦି, ବଙ୍ଗଳାର ବି ବହୁ ପଛରେ ପଡ଼ୁଛି । "ଫୁଟିଆଣୀ, ଅହ୍ୟ ଡେଙ୍ଗୁରା, ନଣନ୍ଦ ପୁଟୁଳି, ଟଗ ଡାହାଣୀ, ପଥର ପାଣି, ଗଜାମରୁଡ଼ି, ଛତରଖିଆ" ପରି କଥା । ଦେଖିଲ, କେଡ଼େ ଚମତ୍କାର !

ଭାଷା ଗମ୍ଭୀର ସ୍ତୂପ । ଠେଙ୍ଗସ୍ତୂପ ନୁହେଁ । ଆମ ଜୀବନ ସଙ୍ଗରେ ବଞ୍ଚିଛି । ଆମ ଭୂଇଁ ଓ ଆମ ପାଣି ପବନରେ ଏହାର ଜମଣ ଓ ବେଢ଼ଷଣ । ଶନ୍ଧି ନ ଜାଣି ଆମ ଭାଷାର ଦୋଷ ଦେଉଛୁ । ଆମେ ଉପର ଠାଉରିଆ ହୋଇ ଆମ ଗୋଡ଼ ଭୂଇଁରେ ଲଗୁ ନାହିଁ । ଆମେ ମା ମୋହ ଛାଡ଼ି ମାଉସୀ ମୋହରେ ମାତୁଛୁଁ । କିନ୍ତୁ ମାଉସୀ କି ମା ହୋଇବ ? ଫଳ ହେବ, "ପଳାଇ ପଶିଲ ମାଉସୀ ଘରେ, ମାଉସୀ ମାଇଲା ଦି ପହରେ ।"

ସଂସ୍କୃତ ଆମ ଅଙ୍କ—ମାର ମା । ଆମ ମା ଘରକରଣା କଲେଣି । ଧଡ଼ା ଫିଟେଇ ଦେଲେ ଭେଡ଼ା ପର୍ଯ୍ୟନ୍ତ ମାଡ଼ିଯିବ । ଆମେ କଅଣ ଆଣ୍ଠକୁ ଧରି ବସିଥିବା । ଆମ ବାଡ଼ ବଗିଚ୍ଚ ଉଜୁଡ଼ି ଯାଉଛି । ଆମେ ଏଣ୍ଡ୍ରିଅ ଦଉଡ଼ି ସିଙ୍ଘମୁଠାକୁ କରୁଥିବା । ନଈ ଶୁଖିଲେ ନାଆ, ଥନ ଶୁଖିଲେ କି କରିବ ମାଆ ? ଆମେ ପଢ଼ିଲୁଣି ଓ ବଡ଼ ହେଲୁଣି । ନିଜ ଗୋଡ଼ରେ ଠିଆ ନ ହୋଇ କେତେ ପିମ୍ପାଇ ଜାଳି ବଡ଼ ବଡ଼ିଆଙ୍କୁ ଡାକୁଥିବା ଓ କହୁଥିବା, "ଅଜା ଆସ, ଆଈ ଆସ, ବେଣ୍ଟାମୁଠି ହାବୁଡ଼ ହାବୁଡ଼ ଆସ ।"

ଏଇ କଥା କରି କରି ଆମର ଏପର୍ଯ୍ୟନ୍ତ ଖଣ୍ଡେ ଠିକ୍ ଓଡ଼ିଆ ବ୍ୟାକରଣ ହେଲା ନାହିଁ । ଆମ ତରକାରୀ ଲୁଣି ବା ଅଲଣା । ଆମେ ସେହି ସଂସ୍କୃତ ବ୍ୟାକରଣକୁ ନେଇ ବେଦର ଗାର ପରି

ଧରି ବସିଛନ୍ତି । ଭାଷା ଅନେକ ଆଗେଇ ଗଲାଣି । ସେ ପୁରୁଣା ସଂପର୍କକୁ କେତେ ଟାଣି ଓଟାରି ପକାଇବା । ନଈ ଏବେ ଥଳ, ବନ୍ଧ ଏବେ ଜଳ । ଆମେ ସଂସ୍କୃତରୁ ବଳ ପାଆନ୍ତେ । କିନ୍ତୁ ତାକୁ ଜାବୁଡ଼ି ଧରି ଆମ ନିଜ କଥା ପାଶୋରି ପକାଉଛନ୍ତି ।

ସେତିକି ନୁହେଁ, ମାତୃଭାଷା ଶିଖାଇବା ପାଇଁ ବାଟ ଦେଖାଇବାକୁ ବହି ନାହିଁ । ଇଂରାଜୀ ଶିଖାଇବା ବାଗକୁ ଓଡ଼ିଆରେ କହି ଦେଉଛନ୍ତି । ଫଳରେ ଆମ ଗୁରୁଜୀ ଆମ ଢଭବ ବୁଝି ନ ପାରି ସେହି ଇଂରେଜୀମୁହାଁ ହେଉଛନ୍ତି । ମାଗି ଆଣିଲେ ତିଅଣ ସୁଉଦ୍‌କେ ପରି ହେଉଛି । ଓଡ଼ିଆ ପଢ଼ାଇଲା ବେଳେ ଅନେକ ଇଂରେଜୀ ଶବ୍ଦ ଲଗାଇବାକୁ ଆମେ ଗୌରବ ମନେ କରୁଛନ୍ତି । ଓଡ଼ିଆ ପଢ଼ା ବା ପଢ଼େଇବାକୁ ହୀନମାନିଆ ଆଖିରେ ଅନେକ ବେଳେ ଦେଖାଯାଉଛି । ଫଳରେ ଆମ ବାଡ଼ି ବାଇଗଣ ଆମକୁ ପିତା ଲାଗୁଛି । ଅଥଚ ଅନ୍ୟ ବାଡ଼ିର କଲରା ଆମକୁ ସୁଆଦିଆ ଲାଗୁଛି ।

ମନ ରସିଲା ବହି ନାହିଁ । ଯେଉଁ ବହି ଅଛି, ସେଥିରେ କଟିମିଟିଆ ଶବ୍ଦ । ଦାନ୍ତଭଙ୍ଗା ଭାଷା, ମଥାକୁ ଛୁଏଁ ନାହିଁ । ସେଥିରେ ଅଙ୍ଗେ ନିଭେଇବା କଥା ନାହିଁ । ତେଣୁ ମନ ମଜ୍ଜ୍ ନାହିଁ । ପଢ଼ାଇବା ଢଙ୍ଗ ବି ଘୋଡ଼ାକୁ ଘୋଷାରିଲା ପରି । ତେଣୁ ପାଠ ପିଇ ହୋଇଯାନ୍ତା, ତା ହେଉ ନାହିଁ । ତା ସାଙ୍ଗକୁ ଇଂରାଜୀ ମାଡ଼ି ବସୁଛି । ଅନ୍ତତଃ ୭।୮ ବର୍ଷ ଓଡ଼ିଆ ପଢ଼ିଲେ ପରେ ଯିନା ଇଂରାଜୀର ମଜା ବୁଝି ହୁଅନ୍ତା । "ମୁଁ ତ ପୂଜ ନାହିଁ ମୋ ମାତା ପିତା, କପରି ପୂଜିବି ଆନ ଦେବତା" ଏଇଆ ହେଉଛି । ଆମ ଦେଶରେ ମୂଳରୁ ଶେଷ ପର୍ଯ୍ୟନ୍ତ ଓଡ଼ିଆକୁ ସତେ ଯେପରି ଉପରଠାଉରିଆ କରି ପଠା ଯାଉଛି, ଏ ଅନ୍ୟ କେଉଁଠି କଣ ଥିବ କେଜାଣି ? ଧର୍ମକୁ ଆଖିଠାରି । ମଥା ପଣୁ

ନାହିଁ, ମନ ରସୁ ନାହିଁ । ପଢ଼ା ଆରମ୍ଭ କରୁଥିବା ପିଲା ବି ଇଂରାଜୀ କହି ପକାଉଛନ୍ତି । ଫଳରେ ଏକୂଳ କି ସେ କୂଳ ନ ହୋଇ ସବୁ ଖେଚଡ଼ି ଅଧାପଚନ୍ତରିଆ ହୋଇ ରହୁଛୁ ।

ଇଂରାଜୀ ନିଶାରେ ଆମେ ମସ୍ତ ହୋଇ ଯାଉଛୁ । ପାଟୁଆ ଲୋକ ବାଟ ଘାଟରେ କଥାଭାଷାରେ ସେଇ ଇଂରାଜୀ । ନାଁ ଖାଣ୍ଟି ଇଂରାଜୀ, ନାଁ ଖାଣ୍ଟି ଓଡ଼ିଆ, ସବୁ ଭେଜାଲ । ଆମ ଜିଭ ଓଡିଆ ଆଡ଼େ ଲେଉଟୁ ନାହିଁ । ଆମେ ଥଙ୍ଗମଙ୍ଗ ହୋଇ ଇଂରାଜୀ ମିଶା-ମିଶି କରି ଦେଉଛୁ । ଏ ନିଶା ବି ଗାଁ ଲୋକଙ୍କୁ ଘାରିଲାଣି । ରୋଗ ଡ଼େଇଁ ଚାଲିଛି । କିଛି ନ ପଢ଼ି ମଧ୍ୟ ଦିପଦ ଇଂରାଜୀ ହାଙ୍କି ଦିଆ ଯାଉଛି ।

ଆମର ଏଇ ଅବସ୍ଥା ସୁଧାରିବା ପାଇଁ ଆମ ଭାଷା-ବିଭବ ଗୋଟାଇବାରେ ଏ ଅତି ସାମାନ୍ୟ ଚେଷ୍ଟା । ସମୁଦ୍ରକୁ ଶଙ୍ଖେ ପଣା ପରି । ପାଞ୍ଚ ସାତ ବର୍ଷ ହେଲା ଆମ ଗାଁ ଗଣ୍ଡାର ଲୋକଙ୍କ ପାଟି ଫିଟା କଥାକୁ ଟିପା ଯାଇଛି । ବହୁତ ଆଡ଼ର ଗାଁ ଲୋକଙ୍କ କଥା ଏଥିରେ ନାହିଁ । ବହୁତ କଥା ବି ଦିଆଯାଇ ନାହିଁ । ସମ୍ଭବ ବି ନୁହେଁ । ଏତ୍ତି ସାମାନ୍ୟ ସାଉଣ୍ଟାକୁ ଭାଷା-ବିଭବ ବୋଲି କହିବା ଠିକ୍ ହେବ ନାହିଁ । କିନ୍ତୁ ମନ ଏଥିରେ ରସିଛି ଓ ଧନ ପାଇବାର ମନ ହୋଇଛି ।

ଏ ଦେଶରେ ପୁଣି ନଥିଲା ଘରର ଝିଅ ନାଁ ବି ଜେମା, ନିମ ଗୁଣ୍ଡାକୁ ମଧୁର ଗୁଣ୍ଡା କହନ୍ତି । ସେଥିପାଇଁ ଅତି ସରାଗରେ ଏହାର ନାଁ ଭାଷା-ବିଭବ ଦିଆ ଯାଇଛି ।

ବିନୀତ

ଲେଖକ



# ଆଞ୍ଚଳିକ ଭାଷା

ଆମ ଦେଶ ନାଁ ଓଡ଼ିଶା । ଆମ ଭାଷା ଓଡ଼ିଆ । ଆମ ଦେଶର ଆଉ କେତୋଟି ନାଁ ଥିଲା—ଓଡ୍ରଦେଶ, କଳିଙ୍ଗ ଆଉ ଉତ୍କଳ । ଆମ ଦେଶରେ ଉଚ୍ଚ ପାହ୍ୱାଆର କଳା ଥିଲା । ସେଥିପାଇଁ ଏହାର ନାଁ ଉତ୍କଳ । ଆମ ଦେଶରେ ଉଚ୍ଚ ଧରଣର ଧାରଣା ଥିଲା, ଭାବନା ବି ଥିଲା । ସେଥିଲାଗି ଆମ ଦେଶର ନଦୀ ନାମ ମହାନଦୀ, ସ୍ୱର୍ଣ୍ଣରେଖା, ଋଷିକୁଲ୍ୟା । ପର୍ବତର ନାମ ମହେନ୍ଦ୍ର, ମେଘାସନ । ଠାକୁରଙ୍କ ନାମ ଜଗନ୍ନାଥ । ଆମ ଦେଶରେ ଅନେକ ବଡ଼ ବଡ଼ କବି ଜନ୍ମିଛନ୍ତି । ଅନେକ ପୋଥି, ପୁରାଣ, ଶାସ୍ତ୍ର, ଗ୍ରନ୍ଥ ଲେଖାଯାଇଅଛି । ସେଥିରେ ଆମ ଭାଷାବନ୍ଧ ପୂରି ରହିଛି । ତା'ଛଡ଼ା, ଆମ ଭାଷା ଗାଁ ଗହଳରେ, ଲୋକମୁଖରେ ଆଉରି ବଢ଼ିଛି ବେଶୀ ବଞ୍ଚୁଙ୍ଗ ହୋଇ ପଡ଼ିଛି ।

ଆମ ଓଡ଼ିଶାର ଚାରିପାଖରେ ବଙ୍ଗ, ବିହାର, ମଧ୍ୟ-ପ୍ରଦେଶ ଓ ଆନ୍ଧ୍ରଦେଶ ଘେରି ରହିଛି । ଆମ ଦେଶର ଯେଉଁ ଅଂଶ ଯେଉଁ ଦେଶକୁ ଲାଗିଛି, ସେଠାରେ କଥାଭାଷାରେ ଭାଷାର ନିଅଣ ଦିଅଣ ହେଉଅଛି ଓ ସେଠାରେ ହେବାର କଥା । ସେଥିଯୋଗୁଁ ଆମର ଓ ସେମାନଙ୍କର ଭାଷା ବଦଳୁଛି ।

ଏଥିପାଇଁ ବାଲେଶ୍ୱର, ମୟୂରଭଞ୍ଜ ଅଞ୍ଚଳର କଥାରେ ଯେଉଁ ଠାଣି ତାହା ଗଞ୍ଜାମ, କୋରାପୁଟ ଅଞ୍ଚଳର ଠାଣିଠାରୁ ଅଲଗା

ହେଉଛି । ସମ୍ବଲପୁରର ବୋଲ ପୁରୀର ବୋଲି ସଙ୍ଗେ ସମାନ ହେଉ ନାହିଁ । ତେଣୁ ପ୍ରତ୍ୟେକ ଅଞ୍ଚଳରେ ନୂଆ ନୂଆ କଥା ରହିଛି ।

ଗଡ଼ଜାତ ଅଞ୍ଚଳରେ ରଜାରାଜୁଡ଼ାଙ୍କ ରାଜୁତି ଥିଲା । ସେଠାର ଲୋକଙ୍କ ରୀତିନୀତି ଚାଲିଚଳଣରେ କେତେକ ନୂଆ ଢଙ୍ଗର କଥା ଅଛି । ମୋଗଲବନ୍ଦୀରେ ମୁସଲମାନ ଓ ଫିରିଙ୍ଗିଙ୍କ ଶାସନ ଫଳରେ ଲୋକ ମୁହଁରେ ଅନେକ ନୂଆ କଥା ଆସିଛି । ଏସବୁ କଥା ଅନେକ ଦିନରୁ ଚଳି ଆସୁଛି ଓ ଘଷି ମାଜି ହୋଇ ନୂଆ ନୂଆ ରୂପ ଧରି ରହୁଛି । ଏଣୁ ଆମ ଦେଶର ସବୁ ଅଞ୍ଚଳରେ ଆମ ଭାଷାର ନାହିଁ ନଥିବା ଅମୂଲ୍ୟ ସମ୍ପଦ ପଡ଼ି ରହିଛି । କଏ କାହାକୁ ଜଣା ନୁହେଁ । ସେ ସବୁ ଏକାଠି ସମ୍ପାଦିବା କଥା ।

ତଟାଞ୍ଚଳ ସମୁଦ୍ରକୁ ଲାଗିଛି । ମାତ୍ର ତାହା ବିଦେଶୀ ଶାସନର ପୀଠଭୂମି ଥିବାରୁ ସେଠି ମୁସଲମାନ ଓ ଇଂରେଜୀ ଭାଷାର ଢେର ଢେର କଥା ପଶିଛି ।

ପୁରୀ ଆମର ଶ୍ରୀକ୍ଷେତ୍ର । ଜଗନ୍ନାଥଙ୍କ ଧାମ । ନିତି ସେଠି ହଜାର ହଜାର ଯାତ୍ରୀ ଦେବଦର୍ଶନ ପାଇଁ ରୁଣ୍ଡ ହେଉଛନ୍ତି । ଭାବର ଦିଆନିଆ ହେଉଛି । ଭାଷା ବେଶୀ ବଢ଼ୁଛି ।

ମୋଗଲବନ୍ଦୀରେ ଯାହା ଝିଡ଼ପୋକ, ସମ୍ବଲପୁରରେ ତାହା ବତରକରି ଓ ଅନୁଗୋଳ ପ୍ରଭୃତି ଅଞ୍ଚଳରେ ତାହା କଲେଇ । ସେଇପରି କୁଆପଥରକୁ କେଉଁଠାରେ କସ ଓ କେଉଁଠାରେ କଇର କହୁଛନ୍ତି । କେହି କେହି ମାଂସକୁ ଲାଲଶାଗ, ଶାଗୁଆଳି କହିଲାବେଳକୁ ଗଡ଼ଜାତ ଅଞ୍ଚଳରେ ତାହାକୁ ଶିକାର

କହନ୍ତି । ପ୍ରକୃତରେ ତାହା ଶିକାର ବା ପାରଧିରୁ ମିଳେ ବୋଲି ତାହାର ନାଁ ହେଉଛି ଶିକାର । କଟକ ଅଞ୍ଚଳରେ ଯାହାକୁ ଖଇ କହନ୍ତି, ଅନ୍ୟ ବହୁତ ଅଞ୍ଚଳରେ ତାହା ଲିଆ । ମାତ୍ର ଲିଆ ସଙ୍ଗରେ ଲାଗିଥିବା ଧାନକୁ ଖଇ କୁହାଯାଏ । ସମ୍ବଲପୁର ଅଞ୍ଚଳରେ ଖିଅର ହେବାକୁ ଉଦର ହେବା କହନ୍ତି । ପ୍ରକୃତରେ ଉଦର ହେବା କହିଲେ କଥାର ଭାବ ଉଚ୍ଚ ଧରଣର ନୁହେଁ କି ? ପୂର୍ବାଞ୍ଚଳରେ ଧାନ କାଟିବା କଥା କୁହାଯାଏ, ମାତ୍ର ଅନୁଗୋଳ ପ୍ରଭୃତି ଅଞ୍ଚଳରେ ତାକୁ ଧାନ ଦାଇବା କହନ୍ତି । ଦାଆ ଓ ଦାଇବାର ମୂଳ କଥା ଏକ । ତେଣୁ ଦାଇବା ଗୋଟିଏ ଭଲ କଥା । ଗଞ୍ଜାମ ଓ କୋରାପୁଟ ଅଞ୍ଚଳରେ କାରସିନକୁ ମାଟିତେଲ, ଦିଆସିଲିକୁ ନିଆଁ ପେଡ଼ି, ଦସ୍ତଖତକୁ ସନ୍ତକ, କାମକୁ ପାଇଟି କହନ୍ତି । ରାଜା ରାଜୁଡ଼ାଙ୍କ ଯୋଗୁଁ ଗଡ଼ଜାତ ଅଞ୍ଚଳର ଗମ୍ଭୀର ସାଆନ୍ତ, କାଠିଲାଗି, ପଟୁଡ଼, ମଣୋହି, ଭଜେ, ଜେମା, ଗୁମ୍ମ, ସାଆନ୍ତାଣୀ ପ୍ରଭୃତି ବହୁତ ନୂଆ ଶବ୍ଦର ଚଳଣି ଅଛି । ଜଗନ୍ନାଥଙ୍କ ହେତୁରୁ ଛେରାପହଁରା, ଛଡ଼ାମୁଦରଥ, ଅଠରନଳା, ବାଇଶିପାହାଚ, ମହାର୍ଦ୍ଧ, କୈବଲ୍ୟ, ଚକାଡୋଳା, କାଳିଆବଳିଆ, କୁଡ଼ୁଆ ପ୍ରଭୃତି ଶବ୍ଦଗୁଡ଼ିକ ପୁରୀର ନିଜସ୍ୱ ।

---

# ବିଭିନ୍ନ ପଦରେ ଏକ ଶବ୍ଦର ବ୍ୟବହାର

## (କ) ବିଶେଷ୍ୟ ଓ କ୍ରିୟା

୧। ଆମେ କାନରେ ଶୁଣୁ ।
ପର ଓଳିତଳେ କାନେଇବା ଉଚିତ ନୁହେଁ ।

୨। ତା ଲୁଗା ଆଣ୍ଠୁ ଟପୁ ନାହିଁ ।
ଏହି ଭଙ୍ଗା କାମରେ ସେ ଆଣ୍ଠେଇ ପଡ଼ିଲା ।
ପ୍ରଧାନ ପୁଅ ଆଣ୍ଠେଇ ବଳ ବାନ୍ଧୁଛି ।

୩। ଏ ପିଲାର କାଶ ଛୁଡ଼ୁ ନାହିଁ ।
ଦେଢ଼ଶୁର କାଶିବାରୁ ଭାଇବୋହୂ ଓଢ଼ଣା ଟାଣିଲେ ।

୪। ଜଡ଼ା ମା ଜଡ଼ା ଠାର ଜାଣେ ।
ନୂଆବୋହୂ ଠାରିବାରୁ ଝିଅ ପୁଅ ଧାଇଁ ଆସିଲେ ।

୫। ସୁକୁଟୀ ଢାଳ ମାଜୁଛି ।
ମାଳୀ ଗଛମୂଳରେ ପାଣି ଢାଳିଲା ।

୬। ବଥ ଚିପିବାରୁ ପୂଜ ବାହାରିଲା ।
ବଥଟା ପୂଜିଗଲା ।

୭। ବଥ ବଥଉଛି, ନାଁ ଆବୁ ବଥଉଛି ।

୮। ତା ମୁଣ୍ଡ ଚନ୍ଦା ପଡ଼ିଲା ।
ହଜମ ଏ ସବୁ ମୁଣ୍ଡେଇଲା ।

୯। ତା ଗୋଡ଼ ଫୁଲା ଭଲ ହୋଇନାହିଁ ।
ବାଉଁଶ ଫୁଲିଲେ ମରେ ।
ମଣିଷ ଫୁଲିଲେ ମରେ ।

୧୦। ହାକିମ ରାଗରେ ଜରଜର ।
ତା କଥା ଶୁଣ, ନୋହିଲେ ସେ ରାଗିବ ।

୧୧ । ତାଙ୍କ ହୁଣ୍ଡାଏ ନାହିଁ ।
ନାଭିଗନ୍ଧ ଡରିଙ୍କେଇଲା ।

୧୨ । ପେଟକୁ ଦାନା, ଦେହକୁ କନା ।
ଏହି କୁଆଟି ପେଟେଇଲାଣି ।

୧୩ । ମୁହଁ ନରେନ୍ଦ୍ର, ପିଠି ଅରକ୍ଷିତ ।
ସେ ସବୁ କଥା ପିଟେଇଲା ।

୧୪ । ଖରାଦିନ ତାତି ସହିବା କଠିନ ।
ଜ୍ୱର ହେବାରୁ ତା ଦେହ ତାତୁଛି ।

୧୫ । ଏହି ତାରକଷି କାମ କଟକରେ ତିଆରି ।
ସେ ମୋତେ ସବୁ କଥାରେ ତିଆରୁଛି ।

୧୬ । ଡାକ-ପିଅନ ଡାକ ଦେଇଯିବ ।
ସେ ମୋ ଡାକ ଶୁଣିଲା ନାହିଁ ।
ସେ ପଣକଥା ଡାକୁଛି ।

୧୭ । ଶହେ ଗଜ ଦୌଡ଼ରେ ସେ ପୁରସ୍କାର ପାଇଲା ।
"ଦୌଡ଼ ନାଁ, ବଡ଼ ଖରା ।"

୧୮ । ସଂସାରରୁ ତାଙ୍କ ମୋହ ତୁଟି ନାହିଁ ।
ମିଠା କଥାରେ ସେ ତାଙ୍କ ମନ ମୋହିଲା ।

୧୯ । ସମୁଦ୍ର ଫେଣ କାନ ପଗୁରେ ଲାଗେ ।
ମୋ ମା ଭାତ ଫେଣେଇଲେ ।

୨୦ । ଏ ଘରେ ଅନେକ ଜିନିଷ ଖୁନ୍ଦାଖୁନ୍ଦି ହୋଇଛି ।
ଗୋଟିଏ ଘରେ ସେ ଅନେକ ଜିନିଷ ଖୁନ୍ଦିଛନ୍ତି ।

୨୧ । ମଧୁର ଟିକିଏ ହେଲେ ତର ନାହିଁ ।
ତର ସହ, କର କାହିଁକି ?

୨୨ । ନଈକେ ବୋଙ୍କ ଦେଶକେ ଫାଙ୍କ ।
କଞ୍ଚା କାଠ ବାଙ୍କିଯିବ ।

୨୩ । ଯେ ପକ୍ଷୀ ଉଡ଼େ ଯେତେ ଦୂର,
ସେ ଜାଣେ ତହିଁର **ଖବର** ।
ତୁମେ ତୁମ କଥା ବିଚାର ।

୨୪ । **ଫାଟରେ** ପାଣି ଗଳିଯିବ ।
ଶୀତ ଦିନେ ଓଠ **ଫାଟେ** ।
ମଧୁ କପାଳ **ଫାଟିଲା** । ସିନ୍ଦୂର **ଫାଟିଲା** ।

୨୫ । ବୁଢ଼ା ଲୋକର **ଦାନ୍ତ** ହଲୁଛି ।
ଏହି ବଳଦଟି ପାଞ୍ଚଟା **ଦାନ୍ତିଛି** ।

୨୬ । **କାଖରେ** ବା କୋଳରେ ଧରିବାକୁ କେହି ନାହିଁ ।
ସେ ଝିଅକୁ **କାଖେଇଛି** ।

୨୭ । ସେ **ଜଳ ଡୁବରେ** ମଲା ।
ଭାସିଲା ପଥର, ଡୁବିଲା ଶୋଲ,
ହରି ବୋଲ ଭାଇ, ଗୋବିନ୍ଦ ବୋଲ ।

୨୮ । **ଠେଲା** ନ ଦେଲେ କାନ୍ଥ ପଡ଼ିଯିବ ।
ସେ ମୋତେ ମଝି ନଈକୁ **ଠେଲିଦେଲେ** ।

୨୯ । ଗୋରୁ **ମୂତ** ଲାଲ ।
ଝିଅଟି ବିଛଣାରେ **ମୂତିଲା** ।

୩୦ । ବିନା **ଦଣ୍ଡରେ** ସେ ଖଲାସ ପାଇଲା ।
ରଜା ପ୍ରଜାକୁ ବିନା ଦୋଷରେ **ଦଣ୍ଡିଲେ** ।

୩୧ । ସେ **ଦଣ୍ଡ** ଦେଲା ।
ଭଲ ଲୋକକୁ **ଦଣ୍ଡ** ନାହିଁ ।

୩୨। ସେ ଗ୍ରାସେ ଖାଇଲେ ।
ଗ୍ରାସିବ ଦ୍ୱାରକା ଭୁବନ, ଜଳେ ବୁଡ଼ିବେ ସର୍ବଜନ ।
୩୩। ଶୁଆଟି ବୋଲ ମାନିଲନ୍ତି ।
ପୁରାଣ ପଣ୍ଡା ଭାଗବତ ବୋଲିଲେ ।
୩୪। ବିଜୁଳିର ଚମକ ଅନ୍ଧାର ଘଡରେ ବାଟ କଢ଼ାଏ ।
ଛୁଆଟି ବାରମ୍ବାର ଚମକୁଛି ।
୩୫। ତାଙ୍କ ସ୍ୱପ୍ନ ସତ ହେଲା ।
ଠାକୁରାଣୀ ବାପାଙ୍କୁ ସ୍ୱପ୍ନେଇଲେ ।
୩୬। ତାର ଭୋକ ନାହିଁ, କି ଶୋଷ ନାହିଁ ।
ବାଛୁରିଟି ଶୋଷେଇଛି ।
୩୭। ଭାବକୁ ନିକଟ, ଅଭାବକୁ ଦୂର ।
ପୂଜା ଦେବାକୁ ସେ ଭାବିଲେ ।
୩୮। ପିଲାମାନେ ଦାଣ୍ଡରେ ଖେଳନ୍ତି ।
ତାଙ୍କ ଦୁଆରକୁ ଲୋକ ଦାଣ୍ଡେଇଛନ୍ତି ।
୩୯। ଖରା ପାଗରେ ରାସ୍ତା ଶୁଖିଯିବ ।
ବାଉଁଶ ପାଚିଲେ ସେଥିରେ ଘୁଣ ଲାଗିବ ନାହିଁ ।
୪୦। ପଛ ଘୁଞ୍ଚା ନାହିଁ ଘରର ଜାତକ ।
ସଭା ତାରିଖ ଘୁଞ୍ଚିଲା ।
୪୧। ମାଟିରେ ନ ଥିବ କତର, ଘେଣ୍ଟୁରେ ନଥିବ ପତର ।
ଗୃହଜାତ ବତୁରଲେ ବଞ୍ଚାଯିବ ।
୪୨। ବୁଢ଼ା କାଳରେ ତାଙ୍କର ଭ୍ରମ ହେଉଛି ।
ସେ ଭ୍ରମି ହେଉଛନ୍ତି ।
୪୩। ବୋଦ୍ଧା ପରଷା ଖାଇବ ।
ରାଣୀ ଅନ୍ନ ପରଷିଲେ ।

୪୪। ମଣିଷ **ପାଞ୍ଚକୁ** ଦେବେ ଟାଙ୍କ।
ଦୋକାନ କରିବାକୁ ସେ **ପାଞ୍ଚିଲେ**।

୪୫। ନଈ **ବଢ଼ିରେ** ଅନେକ ଘର ଭାସିଗଲା।
ନଈ **ବଢ଼ିଲା**।

୪୬। ସେ **ଶିଳରେ** ବେସର ବାଟୁଛି।
ତା ପିଠିରେ ବଧା **ଶିଳେଇଲା**।

୪୭। ତୁମ ବାଣ୍ଟରେ କେତେ ଲଡୁ ପଡ଼ିଲା ?
ସେ ପଇସା **ବାଣ୍ଟିବେ**।

୪୮। ତୁମର **ଛିଙ୍କ** କମିଗଲା।
ଛଗଲଟା **ଛିଙ୍କିଲା**।

୪୯। ସେ କାନ୍ଥରେ ଆଙ୍କିଲା ଚିତ୍ର ଟଙ୍ଗାଇଛି।
ଛହୁଆ ଘର **କାନ୍ଥେଇଛନ୍ତି**।

୫୦। ବାହାରେ କିଏ ?
ଦେହରୁ ଝାଳ **ବାହାରେ**।

୫୧। ସୂର୍ଯ୍ୟଙ୍କର ତେଜ ଝବଦନେ **ତେଜି** ଉଠେ।

୫୨। ଦେଶର **ଟେକ** ରଖିବା ଆମ କାମ।
ସେ ଅପମାନରେ ମୁଣ୍ଡ **ଟେକି** ପାରୁ ନାହିଁ।

୫୩। ଠାକୁରଙ୍କ ପୂଜା ହେବ।
ମୁଁ ତ ପୂଜି ନାହିଁ ମୋ ମାତା ପିତା,
କପଟ ପୂଜିବି ଆନ ଦେବତା ?

୫୪। ଲାଖ ଅରଣ୍ୟରୁ ମିଳେ।
ଏହି ଗଳ୍ପରେ ତାଙ୍କ ମନ ଲାଖିଲା।

୫୫। ଠାକୁରଙ୍କୁ **ଭୋଗ** ଦିଆଯାଏ।
ସେ ରୋଗରେ ପଡ଼ି କଷ୍ଟ **ଭୋଗିଲେ**।

୫୬ । ଭଗ୍ନାଂଶର ଲବ ଓ **ହରକୁ** ଚିହ୍ନାଇ ଦିଅ ।
ଦଶକୁ ଦୁଇଦ୍ୱାରା **ହର** ।

୫୭ । ବସନ୍ତର **ଚିହ୍ନ** ତା ମୁହଁରେ ଅଛି ।
**ଚିହ୍ନଟ** ଦେଇ ମାନୁ ନାହାନ୍ତି ।
ସେ ମୋତେ **ଚିହ୍ନିଲେ** ।

୫୮ । ପିଲାମାନଙ୍କୁ ମୋର **ଆଦର** ଜଣାଇବେ ।
ମ'ର ମୁଣ୍ଡ ଖରାପ ହେବାରୁ ସେ ପିଲାଙ୍କୁ **ଆଦରଚଲ** ନାହିଁ ।

୫୯ । କର୍ତ୍ତାର **ଇଚ୍ଛାରେ** କୀର୍ତ୍ତନ ।
**ଇଚ୍ଛନ୍ତି** ଦାମ୍ଭିକେ ହସ୍ତେ ରଖିବାକୁ ସମସ୍ତଙ୍କ ଭାଗ୍ୟ ଡୋର ।

୬୦ । ସେ **କୋଡରେ** ମାଟି ହାଣୁଛି ।
ମୁଁ ଗଛମୂଳ **କୋଡ଼ିଲି** ।

୬୧ । ଓଷା କରନ୍ତି **ଖୋସା** ପାରିବାକୁ ।
ସେ କାନରେ ଫୁଲ **ଖୋସିଲେ** ।

୬୨ । **ଗପ** ଶୁଣିବାକୁ ତା'ର ମନ ଥାଏ ।
ସେ ଏଣୁତେଣୁ ଗୁଡ଼ାଏ **ଗପିଲା** ।

୬୩ । ହଳଦୀ **ଚୂରରେ** ସେ ମୁକୁଳ ପକାଇବ ।
ସେ ଶିଳରେ ହଳଦୀ **ଚୂରିଲା** ।

୬୪ । ସେ ଖଜଣା **ଛାଡ଼** ପାଇଁ ଅର୍ଜି କରିଛନ୍ତି ।
ସେ କଟକ **ଛାଡ଼ି** ଘରକୁ ଗଲା ।

୬୫ । **ଢୋକେ** ପିଇ ଦଣ୍ଡେ ଶୋଇଲି ।
ରୋଗୀ ପାଣି **ଢୋକିଲା** ।

୬୬ । ଖାଲି ଜଟଝଟରେ ଦରକାର ନାହିଁ ।
ଜପ, ହରେ କୃଷ୍ଣ ହରେ ରାମ ।
୬୭ । ଠକ ନ ଦେଖିଲେ ବଣିଆ ଦେଖ ।
ଦୋକାନୀ ଠକିଲା ।
୬୮ । ଘିଅ ବଡ଼ା ସରିଲେ ଆମେ ଖାଇବା ।
ମା ଘିଅ ବାଢ଼ିଲେ ।
୬୯ । ମୁଣ୍ଡ ବନ୍ଧା ଗୁଡ଼ ଯାଇଥିଲା । ପୁଣି ମୁଣ୍ଡ ବାନ୍ଧିଲା ।
୭୦ । ଏହାର ଭେଦ ତୁମେ ବୁଝିବ ନାହିଁ ।
ଗଛମୂଳରେ ପାଣି ଭେଦିଲା ।
୭୧ । ସେକଦ୍ୱାରା ତା ଦେହର ବଥା କମିଗଲା ।
ମା ସକାଳେ ଛୁଆକୁ ସେକିବ ।
୭୨ । ହରି ସମସ୍ତଙ୍କ ଦୁଃଖ ହରିବେ ।
୭୩ । ପାହାଡ଼ରୁ ଗୋଟିଏ ଝର ବାହାରିଛି ।
ସୁରାଇରୁ ପାଣି ଝରୁଛି ।
୭୪ । ବହୁ ବହୁଲା ବନବାସ ବାସରେ ।
୭୫ । ଭାଇ କରଣୀ କାଟୁଛି ।
କହ୍ନାଇଲ ହେବ ନାହିଁ, କଳେଲ ହେଲା ।

## (ଖ) ବିଶେଷଣ ଓ କ୍ରିୟା

୧ । କାଲିଠାରୁ କଷା ମାଉଁସ ଥିଲା ।
ମଳିଚା କଷିଲେ ଗନ୍ଧାଏ ।
୨ । ଚଲା ବଉଦ ।
ପଥ୍ୟ ରାସ୍ତାରେ ଚାଲିବ ।

୩ । ବସନ୍ତ ଗୋଟିଏ ଉଡ଼ା ରୋଗ ।
ଉଡ଼ା ଖବରରେ ବିଶ୍ୱାସ କର ନାହିଁ ।
ପତାକା ଆକାଶରେ ଉଡ଼ିଲା ।

୪ । ଉଠା ଚୂଲି ।
ସେ ମୋ ଦାନା ଉଠେଇଲାଣି ।

୫ । ଠିକା କାମ ।
ସେ କଥାଟା ଠିକେଇଲାଣି । (ଅଟକଳ)

୬ । ପଢ଼ା ବହି କିଣି ଆଣ ।
ସେ ବହି ପଢ଼ିବ ।

୭ । ଗଣ୍ଡବ ଲୋକଟି ଛିଣ୍ଡା ଲୁଗା ପିନ୍ଧିଛି ।
ଦଉଡ଼ି ଛିଣ୍ଡିଲା ।

୮ । ପାଚିଲା ଆମ୍ବ ମିଠା ।
ପାଚିଲା ଗାମୁଛା ସେ କାନ୍ଧରେ ପକାଇଛି ।
ବୈଶାଖ ମାସରେ ଆମ୍ବ ପାଚେ । ବେଲ ପାଚିଲେ
କାଉର କି ଯାଏ ।

୯ । ଲିମ୍ବ ଗଛର କଅଁଳ ପତ୍ର ଆମେ ଖାଉଁ ।
ଏ ମାଟିରେ କୁଶ କି କଅଁଳିବ ନାହିଁ ।

୧୦ । ଗାଧୁଆ ଘର କିଆଁର ଦୋଇନାହିଁ ।
ସେ ଉଷୁମ ପାଣିରେ ଅଙ୍ଗ ଗାଧୋଇବ ।

୧୧ । ମୋଟା କାଠ ଆଣ ।
ସେ ଖାଇପିଇ ମୋଟେଇଲାଣି ।

୧୨ । ମଲା ମଣିଷ କଥା କହେ ନାହିଁ ।
ସେ କେବେ ମଲା ମୁଁ ଜାଣେ ନାହିଁ ।

୧୩ । ଜହ୍ନ ଆଜ **ଗୋଟା** ହୋଇଛି ।
ତାଳ ତୋଟମା ସେ **ଗୋଟାଇଲାଣି** ।

୧୪ । **ହଜିଲା** ବଳଦ ଖୋଜନ୍ତି ଠାଇଁ ।
ଯେ ଦିନୁଁ ଗଲ ମୋ ସମ୍ପତ୍ତି, ସେ ଦିନୁ **ହଜିଲା** ମୋ ବୁଦ୍ଧି ।

୧୫ । ବହୁତ ଦିନର ବେମାର ପରେ ଆଜି ସେ **ନକ ହେଲେ** ।
ସକାଳେ ସେ ଘର ବାହାର **ନକେଇଲା** । (ସଫାକରିବା)
କୁଲାରେ ସେ ଚାଉଳ **ନକେଇଲା** । (ବାଛିବା)

୧୬ । **ଖୋଲା** ଘରେ ସେ ଶୋଉଛି ।
ଏ ବର୍ଷ ନୂଆ ରେଳ ରାସ୍ତା **ଖୋଲିବ** ।

୧୭ । **ତାଙ୍କ ଟଙ୍କା କମ୍ ବା ବେଶୀ** ମୁଁ ଜାଣେ ନାହିଁ ।
ସନ୍ଧ୍ୟାବେଳକୁ ତାଙ୍କ ଦେହର ଉତ୍ତାପ କମିଲା ।

୧୮ । ସେ **ଖରଡ଼** ଜାଗରେ ଧାନ ବୁଣିଲେ ।
ନୂଆ ବୋହୂ କଲମଶାଗ **ଖରଡ଼ିଲେ** ।

୧୯ । **ବୁଲା** ଫକୀରର **ଝୁଲା** ମୁଣିରେ ଅନେକ ଚିଜ ଅଛି ।
ସେ ଦ୍ୱାରେ ଦ୍ୱାରେ **ବୁଲୁଛି** ଓ ହାତରେ ଗୋଟିଏ ମୁଣି **ଝୁଲାଇଛି** ।

୨୦ । ସେ ତ **ଶୁଖିଲା** ଭୂଇଁରେ ନାଆ ପେଲୁଛି । ତାର ପରବାଏ କଉଣ ?
ଗୋଡ଼ ଘା ମଲମ ଲଗାଇବାରୁ **ଶୁଖିଲା** ।

୨୧ । ହଜିଲା ବଳଦ **ଖୋଜିଲା ଠାଇଁ** ।
ଜଙ୍ଗଲରେ ସେ ଶିକାର **ଖୋଜିଲା** ।

୨୨ । ବେପାର ଚଢ଼ା ଦରରେ ଆଳୁ ବିକିଲା ।
ଦର **ଚଢ଼ିଯାଉଛି** ।

୨୩ । **ଶୋଇଲା** ପୁଅର ଭାଗ ନାହିଁ ।
ସେ ଗଛ ଅଧରେ **ଶୋଇଲା** ।

୨୪ । **ସାଉଁଟିଲା** କାଣ୍ଡ ଯୁଦ୍ଧକୁ ନଅଣ୍ଟ ।
ମୂଲିଆଣୀ ଗୋବର **ସାଉଁଟିଲା** ।

୨୫ । ବାବୁ ବଡ଼ ଚଡ଼ା ଲୋକ । ( ରାଗୀ)
ସାମାନ୍ୟ କଥାରେ ସେ **ଚଡ଼ନ୍ତି** । (ରାଗିବା)

୨୬ । **ଧୋଇଆ** ଅଞ୍ଚଳରେ ପ୍ରତିବର୍ଷ ଧାନ ଭଲ ହୁଏ ନାହିଁ ।
ଧୁଆ ପଖାଳ ସେ ଖାଇଲେ ।
ମୁଁ ତାଙ୍କ ଲୁଗା **ଧୋଇଲି** ।

୨୭ । **ଖାଇଲା** ପୁଅଟିଏ ରଙ୍କ ।
ଉପାସ ପରେ ସେ ଆଜ ମୁଠେ ଭାତ ଖାଇଲା ।

୨୮ । "ଗଲିଣିତ **ଗଲା** କଥାରେ ସଙ୍ଗାତ ।"
ପାଗଳା ବୁଲିଆ ଏଇ ବାଟେ ଗଲା ।

୨୯ । **ଭୁକିଲା** କୁକୁର କାମୁଡ଼େ ନାହିଁ ।
କୁକୁର **ଭୁକେ** ।

୩୦ । **ଗରଜିଲା** ମେଘ ବରଷେ ନାହିଁ ।
ମେଘ **ଗର୍ଜିଲା** । ବାଘ **ଗର୍ଜିଲାଣି** ।

୩୧ । ବସା ଦହି ଖାଇବା ଭଲ ।
ଦହି ଭଲ **ବସିଛି** ।

୩୨ । **ଫେରନ୍ତା** ଡାକରେ ଯେମିତି ଦେଖା ପାଇବ ।
ବାପା ଆଜ ଘରକୁ **ଫେରିଲେ** ।

## (ଗ) ବିଶେଷଣ ଓ ବିଶେଷ୍ୟ

୧। ସୁନା ମୁଦି କିଣାଯିବ।
ଭରିଏ ସୁନାର ଦାମ ଏବେ ଶହେ ଟଙ୍କା।

୨। କାନ୍ଥମାଟି ଗଛମୂଳରେ ଦିଆଯାଏ।
କାନ୍ଥରେ ସାପଟିଏ ଚଢ଼ିଛି।

୩। ଖରାଦିନେ କୁକୁର ଧକାଏ।
ଖରା ସହେ ତରୁ।

୪। ମାଙ୍କଡ଼ ମୁହଁ କଳା।
ସେ ମୋ ମୁହଁରେ କଳା ବୋଳି ଦେଲେ।

୫। ଜହ୍ନ ରାତିରେ ପିଲାମାନେ ଖେଳନ୍ତି।
ଜହ୍ନ ଉଇଁଲାଣି।

୬। ସେ ରଙ୍ଗ ଫୁଲ ତୋଳିଲେ। (ନାଲି)
ଏ ରଙ୍ଗ ରହିବ ନାହିଁ।

୭। ସେ କାଠୁଆ ଲୋକ, କାହାରି ଦୁଃଖରେ ତରଳିବ ନାହିଁ।
ହଳଦୀ କାଠୁଆରେ ହଳଦୀ ନାହିଁ। କାଠୁଆଟି ନଈରେ ଭାସୁଛି।

୮। ତାକୁ ଅଛୁଆଁ ଲୋକ ବୋଲି ଭାବିବା ଭୁଲ।
ସେ ଛୁଆଁ ଅଛୁଆଁ ମାନନ୍ତି ନାହିଁ।

୯। ସେ ଦଶ ଟଙ୍କା ପାଇଲେ।
ଗୋପବନ୍ଧୁ ଦେଶ ଓ ଦଶ ପାଇଁ ଜୀବନ ଦେଲେ।

୧୦। ବୁଢ଼ା ଲୋକଟିର ସାହା ଭରସା ନାହିଁ।
ବୁଢ଼ା କାକୁଡ଼ିର ମଞ୍ଜି ରଖିବ।
ଏହି ବୁଢ଼ାର ଦାନ୍ତ ନାହିଁ।

୧୧ । "ସୀତା ହରଣ ଓ ରାବଣ ମରଣ"—
ରାମାୟଣର ସାର କଥା ।
ଗୋବର ଗୋଟିଏ ଭଲ ସାର ।
୧୨ । ମାଠିଆର ତଳ ପାଣି ଗୋଳିଆ ।
ତଳକୁ ଅନାଇ ସେ ଠିଆ ହେଲା ।
୧୩ । ଉପର ପାଟିରେ ଘା ହୋଇଛି ।
ସେ ଉପରକୁ ଚାହିଁଲା ।
୧୪ । ଛୁଆ ପୁଅ ପାଇଁ ଖେଳଣା ଦରକାର ।
ହଲେଇ ଛୁଆଟିର ଆଖି ଫିଟିଲାଣି ।
୧୫ । ଅଜଣା ରାଇଜକୁ ସେ ଯାଉନାହିଁ ।
ମୋ ଅଜଣାରେ ସେ ଆମ ଘରକୁ ଆସିଥିଲା ।
୧୬ । ଦୂର ବନ୍ଧୁ ସୁନ୍ଦର, ଦୂର ପର୍ବତ ସୁନ୍ଦର ।
ଶାଗୁଣା ବହୁତ ଦୂରରୁ ଦେଖିପାରେ ।
୧୭ । ଚୂନା ମାଛ ଖାଇବାକୁ ଭଲ ।
ଗୁଣ୍ଡିଲା ଚୂନାରେ ପିଠା ହୁଏ ।
୧୮ । ସେ ଜଣେ ସାଧୁ ଲୋକ ।
ସେ ଜଣେ ସାଧୁ ।
୧୯ । ଏଇଟା ତାଙ୍କର ଶେଷ ପ୍ରଶ୍ନ ।
ଶେଷରେ ସେ ଋଣ ସୁଝିଲେ ।
୨୦ । ଛୋଟ ଲୋକଙ୍କ ମୁହଁରେ ବଡ଼ କଥା ଶୋଭା ପାଏ ନାହିଁ ।
ବଡ଼ ବଡ଼ ଗଲେ ଫସରଫାଟି,
ସାନ ସାନ ଆସିଲେ ବେସର ବାଟି ।
୨୧ । ରନ୍ଧା ମାଛ ସେ ଖାଇବ ।
ଭାତ ରନ୍ଧା ସରିଲା ।

୨୨ । ଅନ୍ଧ ଲୋକ ବାଟ ଦେଖିପାରେ ନାହିଁ ।
ଅନ୍ଧ ଦେଶକୁ ଚଳ ଦର୍ପଣ ବିକ ।
ଅନ୍ଧ ପୁଟୁଳି ବାନ୍ଧି ପିଲାମାନେ ଖେଳନ୍ତି ।
ଅନ୍ଧ ପ୍ରତି ସେ ଦୟା କଲେ ।

୨୩ । କଣା ସୁରଙ୍ଗରୁ ପାଣି ଝରୁଛି ।
ହାଣ୍ଡିରେ ବାଜି କଣା ପଡ଼ିଛି ।

୨୪ । ଯାହା ନ ଦେଖିବ ଦୁଇ ନୟନେ,
ପରତେ ନ ଯିବ ଗୁରୁ ବଚନେ ।
"ଗୁଁ ରୁ ପ୍ରାପ୍ତ ତାଙ୍କୁ ଦୂରୁ କର ଯତ୍ନ"
ସଖୀ ପ୍ରାପ୍ତ ତୋତେ ସୁଚୁଥିଲା ମନ୍ତ୍ର ।"

୨୫ । ଧୋବ ଲୁଗା ପିନ୍ଧିବା ଭଲ ।
ଏହି ଲୁଗା ଘର ଧୋବ ହେଲଣି ।

୨୬ । ବସ୍ତୁ ବନ୍ଧା ଲୋକ ଏହି କାମରେ ଲାଗିଲେ ।
ବଳ ବଛା ସରିଲାଣି ।

୨୭ । ଚନ୍ଦ୍ରା ବ୍ରାହ୍ମଣର ପଇତା କଅଣ ଦରକାର ?
ସେ ମୋତେ ତାଙ୍କ ଚନ୍ଦ୍ରା ଦେଲେ ନାହିଁ ।

୨୮ । ରକ୍ତ ମନ୍ଦାରରେ ସେ ଦେବୀ ପୂଜିଲେ ।
ତା ଦେହରେ ରକ୍ତ ନାହିଁ ।

୨୯ । ଶଠ ଲୋକକୁ ଦୂରୁ ଜୁହାର ।
ଶଠକୁ ଶଠ ଜିତେ ।

୩୦ । ଏକ ଲେଖା, ଶହେ ଘର ।
ଶହେର ପୂର୍ବ ସଂଖ୍ୟା କେତେ ?

୩୧ । ଶୀତ ପାଇଁ ଶୀତ ଲୁଗା କିଣ ।

୩୨ । ସତୀ ସ୍ତ୍ରୀ କୁଳକୁ ସୁନ୍ଦର ।
ସାଧ୍ୱୀ ପରମା **ସତୀ** ।

୩୩ । ସେ **ଶୁଭ** ବେଳରେ ଘରୁ ବାହାରିଲେ ।
ମା ଝିଅ ଦେଉଳକୁ ଗଲେ, ଯେଉଁଠା **ଶୁଭ** ଯେ ମନାସିଲେ ।

୩୪ । **ହିତ** କଥା ସେ ଶୁଣିବାକୁ ନାରାଜ ।
ସମସ୍ତଙ୍କ **ହିତ**ପାଇଁ ସେ କାମ କଲେ ।

୩୫ । **ମଳ** ମାସରେ ଶୁଭ କାମ କରିବା ଅନୁଚିତ ।
ଲୁହା-**ମଳ** ଅନେକ କାମରେ ଲାଗେ ।

୩୬ । **ସବୁ** କାମ ସରିଛି ।
ମୋର **ସବୁ** ସରିଲା ।

୩୭ । **ରୁଆ** ଧାନ ଥୁଆ ।
ଧାନ **ରୁଆ** ଚାଲିଛି ।

## (ଘ) ବିଶେଷ୍ୟ, ବିଶେଷଣ ଓ କ୍ରିୟା

୧ । ଦର **ପୋଡ଼ରୁ** କୁଠା କେରେ ମିଳିଲେ ହେଲା ।
"ମୁଁ ସେଇ ଦର-**ପୋଡ଼ା** କାଠ ।"
**ପୋଡ଼ା** ବାଇଗଣ ଚଟଣି ।
ସେ ଆଳୁ **ପୋଡ଼ିଲା** ।

୨ । ଜ୍ୱାଇଁର ପୂନେଇ ଖିଆ ଓ ଗୋଡ଼ **ଧୁଆ** ହୋଇ ନାହିଁ ।
**ଧୁଆ** ମୂଳା, ଅଧୁଆ ମୂଳା ସମାନ ।
ସେ ଗୋଡ଼ **ଧୋଇଲା** ।

୩ । **ଚୋର** ଧରା ପଡ଼ିଲା ।
**ଚୋରା** କାରବାର ବନ୍ଦ ହେବ । **ଚୋରା** ବସନ୍ତ ।
କଲମ କିଏ **ଚୋରେଇଲା** ?

୪ । ମୁଣ୍ଡିଶାହାଡ଼ା, ଖଗ୍ୱଦନେ ହଏ ପଡର-ଝଡ଼ା ।
ଅ ଝଡ଼ା ଚାଳ ଗଛ ।
ପାଚିଲ୍ ପସ ଗଛରୁ ଝଡ଼େ ।

୫ । ଘରର ଲମ୍ବ କେତେ ?
ଲମ୍ବ ପଣତ ବ୍ଲଶଆଡ଼କୁ ପାଏ ।
ଦୁବକୁ ଲମ୍ବ, ଦାରୁକୁ ଶ୍ଲେଠ ।
ଝିଅଟି ଗୋଡ଼ ଲମ୍ବାଇଛି ।
ଦରଜି ଜାମାକୁ ଲମ୍ବେଇଲା ।

୬ । ଯେ ପଛରେ ଆସି ଆଗେ ଗଲା ।
ମୋ ପଛରେ କଏ ବସିଲା ?
ଘୋଡ଼ାର ପିଛା ଟିଗୋଡ଼ି ଟଳିଯା ।
ମଧୁ ଦୌଡ଼ରେ ପଛେଇଲା ।

୭ । ସେ ମୋ ଆଗରେ ଠିଆ ହୋଇଛି ।
ଏହି କୁକୁରର ଆଗ ଗୋଡ ଖଣ୍ଡିଆ ।
ବିବାହ ପ୍ରସ୍ତାବ ଖୁବ୍ ଆଗେଇଲା ।

୮ । ଗୋଟିଏ ଭିଣାର ଦାମ ଏକ ଟଙ୍କା ।
ଭିଣା ତୂଳାରୁ ବଳଣା ହେବ ।
ଅଧଘଣ୍ଟାରେ କେତେ ତୂଳା ଭିଣିବ ?

୯ । କାଠହଣା ସହଜ ନୁହେଁ; ମାଟିହଣାଠାରୁ କଠିନ ।
ହଣା କାଠ, ହଣା ମାଟି ।
ସେ ବାଡ଼ ହାଣିଲେ ।

୧୦ । ଘର ପାଖରେ କଏ ?
ପାଖ ପଡ଼ଶାକୁ ଗୁଡ଼ ହେବ ନାହିଁ ।
ପକ୍ଷୀଷା ହନ ପାଖେଇଲା ।

୧୧ । ବୁଢ଼ା ବୟସରେ ତାଙ୍କ ଥକା ମେଣ୍ଟ ନାହିଁ ।
ଥକାମନ ଗ୍ଭଲି ଯିବା, ଚକାନୟନ ଦେଖିବା ।
ଏଣିକ ସେ ଥକ୍କଲେଣି ।

---

# ବିଭିନ୍ନ ଅର୍ଥରେ
# ଗୋଟିଏ ଶବ୍ଦର ବ୍ୟବହାର

ଗୋଡ଼େଇବା— କୁକୁର ବଗୁଡ଼କୁ ଗୋଡ଼େଇଲା । କୌଣସି ପଦାର୍ଥକୁ ଗୋଡ଼େଇବା ଅନୁଚିତ । ବଡ଼ଲୋକଙ୍କୁ ଗୋଡ଼େଇ ଗୋଡ଼େଇ ଥକିଲିଣି ( ଅନୁସରଣ କରିବା ) ।

ଖେଳିବା— କଳା ଆମ ଦାଣ୍ଡରେ ସାପ ଖେଳାଇଲା । ପିଲାମାନେ ପଢ଼ିଆରେ ବାଗୁଡ଼ି ଖେଳନ୍ତି । ମାଟି ଖେଳାଇ ଦିଅ । ଏ ଅଙ୍କରେ ମୁଣ୍ଡ ଖେଳେ । ସେହି ଦୁଷ୍ଟ ଲୋକ ଆମ୍ଭମାନଙ୍କ ସହିତ ଖେଳ ଖେଳୁଛି । ଚଷା ବିଲରେ ଖେଳୁଆ ( ବାଟିଆ ) ଖେଳଉଛି ।

ଲାଗିବା— ଆପଣଙ୍କୁ ଏ ବଚ୍ଚୟୁକ୍ତି ଲାଗିଲା । ମୋତେ ଶୀତ ଲାଗୁଛି । ଯେ ମାଗି ଖାଇଲାଣି ସେ ଲାଗି ଖାଇବ ନାହିଁ । ଯୁଦ୍ଧ ଲାଗିଲା । ସେ ମୋର ମାମୁଁ ଲାଗନ୍ତି । ସହର ଲୋକେ ମୂଲ ଲାଗୁଛନ୍ତି । ଏହି କଥାଟିରେ ଏ ବର୍ଷ ବାଇଗଣ ଲାଗିଲା । ପିଲାମାନେ ଲଗାଲଗି ହୋଇ ବସିଛନ୍ତି । ଚୁଲି ଲଗାଇବାକୁ କାଠ ନାହିଁ । ବର୍ତ୍ତମାନ ଠାକୁରଙ୍କ ପାଖରେ ଭୋଗ ଲାଗିବ । ମହାଦେବଙ୍କ ପାଖରେ ସକାଳେ ଫୁଲ ଲାଗି ହୁଏ । ଗୋଲମରିଚ ଔଷଧରେ ଲାଗେ । ଶୀଘ୍ର

ଲାଗି ଗଲ (ଯୋଡ଼)। ତାକୁ ନିଦ ଲାଗୁଛି। ଶଠିରେ ଟିକଟ ଲଗିନାହିଁ। ଲାଗିଲା ତୁମ୍ଭଙ୍କୁ ଏ ରଘୁକୁଳ। ତାର ଆଖି ଲାଗିଲା ( ସର୍ଦ୍ଦିହେତୁ ଆଖିପତା ଯୋଡ଼ ହେବା )। ମୋ ସଙ୍ଗରେ ଲାଗ ନାହିଁ। ଲାଗ, ଲାଗ ବୋଲ ଦରପାବଣ୍ଟଙ୍କର କୋଟି କୋଟି ଆଜ୍ଞା।

**ଠା**—ସେ ଠା ବସିବ। ସେ ମାସକ ଭିତରେ ଭଳ। ଠା ହେଲାଣି। ସେ କେଉଁଠାରେ ରହନ୍ତି। ହଜିଲା ବଳଦ ଖୋଜିଲା ଠାଇଁ। ଏଠା ସେଠା ହୋଇ ତାର ସମୟ ଗଲା। ସେ ସ୍ତ୍ରୀଲୋକଟି ତାଙ୍କ ଘରଠାଇଁ ବସିଛି।

**ପକ୍ଷ**— ଦୁଇ ପକ୍ଷରେ ଏକ ମାସ ହୁଏ। ବର୍ଷରକ ପକ୍ଷରେ ପକ୍ଷପାତ ଆଚରଣ ଶୋଭନୀୟ ନୁହେଁ। ସେ ପକ୍ଷାଘାତ ରୋଗ ଯୋଗୁଁ ଶଯ୍ୟାଶାୟୀ ହୋଇଛନ୍ତି। ପକ୍ଷ ଯାହାର ଅଛି ସେ ପ୍ରାଣୀକୁ ପକ୍ଷୀ କହନ୍ତି।

**ଫଳ**— ସେ ଫଳମୂଳ ଖାଇ ଜୀବନଧାରଣ କରନ୍ତି। ଗାଈ ଫଳ ଯାଇଛି ( ଗର୍ଭବତୀ ହେବା )। ମନୁଷ୍ୟ କର୍ମଫଳ (ପରିଣାମ) ଭୋଗିବ। ସେହି ଅଙ୍କର ଫଳ ଠିକ୍ ହେଲା ନାହିଁ (ଉତ୍ତର)। ପରୀକ୍ଷାର ଫଳାଫଳ ଜଣାଯାଇ ନାହିଁ। ସେ ମ ଫଳା (ଯୁକ୍ତାକ୍ଷର) ସାରିଲାଣି। ଆଠ ବର୍ଷରେ ଏହି ଆମ୍ବଗଛ ଫଳିଲା (ଫଳଧରିବା)। ଆମ ବୁଢ଼ାବାପା ଯାହା କହିଥିଲେ ତାହା ଏତେ ଦିନେ ଫଳିଲା। ତାର ଅଭିଶାପ ଶେଷରେ ଫଳିଲା (ସଫଳ ହେବା )। କୁଣ୍ଡେଇ ହୋଇ ତା ଦେହ ଫଳିଗଲା। ଫଳି ମାଛରେ କଣ୍ଟା ବେଶୀ ଥାଏ।

ଫାଳ— ସେ ଫାଳେ ପାନ ମୋତେ ଦେଲା । ଲଙ୍ଗଳରେ ଲୁହାର ଫାଳ ଲାଗିଥାଏ । ବାଉଁଶକୁ ଚିରି ସେ ଫାଳିଆ କଲା । ବଳଦର ଗୋଡ଼ ଫାଳେଇ ଗଲା ।

ଧାର— ସେ ମୋଠାରୁ ଶହେ ଟଙ୍କା ଧାର କରିଛି ( ଋଣ କରିବା ) । ଖରାଦିନେ ଛୋଟ ଛୋଟ ନଦୀର ଧାର ବନ୍ଦ ହୋଇଯାଏ । ଏହି ଛୁରୀର ଧାର ନାହିଁ (ତୀକ୍ଷ୍ଣାଂଶ) । ନଦୀ-ଧାରରେ (କୂଳ) ଘର କରିବା ଅନୁଚିତ । ଏହି ଗ୍ରାମର ଲୋକମାନେ ଅଫିମ ଖାଆନ୍ତି, କିନ୍ତୁ ଗୋବିନ୍ଦ ଏ ସବୁର ଧାର ଧାରେ ନାହିଁ । ଯଦୁ ଖଣ୍ଡାଧାରରେ ବାଟ ଚାଲେ ।

ମିଳିବା— ଭାତ ଖାଇବାକୁ ମିଳିବ । ହାଣ୍ଡି କଣା ଥିବାରୁ ମିଳେଇ ଗଲା । ମିଳିମିଳା ହେଲେ ପିଲାମାନେ ବଡ଼ କଷ୍ଟ ପାଆନ୍ତି । ରାଜାଙ୍କ ବିରୁଦ୍ଧରେ ପ୍ରଜାମାନେ ମେଳ ବାନ୍ଧିଲେ । ପଞ୍ଚାନନ ମେଳାରେ ଲୋକମାନେ ଭଗବାନଙ୍କ ନାମ ସ୍ମରଣ କରନ୍ତି । ଦଶମେଳକ ନ ହେଲେ କନ୍ୟାକର୍ତ୍ତା ଓ ବରକର୍ତ୍ତା ବିବାହ ଦେବାକୁ ମଙ୍ଗନ୍ତି ନାହିଁ ।

ଶୀତ— ଥଣ୍ଡା ପଡ଼ିବାର ମୋତେ ଶୀତ ଲାଗୁଛି । ଗରିବ ଲୋକଟି ଶୀତ ଲୁଗା (ଗରମଲୁଗା) କିଣି ପାରୁନାହିଁ । ଏହି ଗଳ୍ପଟି ଶୁଣି ତା ଦେହ ଶୀତେଇ ଉଠିଲା । ଶୀତକାଳରେ ଦିନ ଛୋଟ ହୁଏ ।

ଖଟା— ତେନ୍ତୁଳି ଖଟା ଲାଗେ । ଦୁଧ ଦୁହିଁବା ଆଶାରେ ସେ ବାଛୁରୀକୁ ଖଟେଇଛି । ମାଲିକ ତାର ଚାକରମାନଙ୍କୁ ଦିନ-ରାତି ଖଟାଏ । ଖଟା ସାହାଯ୍ୟରେ ଭାତ ବେଶି ଖାଇ ହୁଏ । ବ୍ୟବସାୟରେ ଟଙ୍କା ଖଟେଇବା ଉଚିତ । ଭୋଜିଭାତ ହେଲେ ସାଧାରଣତଃ ଖଟେଇଟିଏ ହୋଇଥାଏ ।

**ଖଞ୍ଜ**—ସେ ଖଞ୍ଜରେ (କୌଶଳ) କାମ କରିନେଲା । କାରିଗର ମୂର୍ତ୍ତିଟିକୁ ଭଲ ଭାବରେ ଖଞ୍ଜିଛି । ସେ ଅଖଞ୍ଜରେ (ଅବାଗରେ) ପଡ଼ିଲା । ପ୍ରତ୍ୟେକ ମନ୍ଦିରର ପରିଚାଳନା ପାଇଁ ସ୍ୱତନ୍ତ୍ର ଖଞ୍ଜା (ବ୍ୟବସ୍ଥା) ଅଛି । ତାଙ୍କର ଖଞ୍ଜାଏ ଘର ଅଛି । ଖଞ୍ଜ ଅଖଞ୍ଜ ହେଲେ ସୁଧାରିବା ମୁସ୍କିଲ । ସେ ଜଣେ ଖଞ୍ଜ । ଭିକ୍ଷୁକ ଖଞ୍ଜଣି ବଜାଇ ଭିକ୍ଷା କରେ ।

**ପିଣ୍ଡ**—ଏହି ଖବର ଶୁଣି ତାର ପିଣ୍ଡରୁ ପ୍ରାଣ ଉଡ଼ିଗଲା ପରି ଲାଗିଲା । ପିତୃଶ୍ରାଦ୍ଧ ଦିନ ପିଣ୍ଡ ଦିଆଯାଏ । ମାଟିପିଣ୍ଡ ଦିନେ ମାଟିରେ ମିଳେଇ ଯିବ ।

**ଯୋଡ଼**— ଲୁହାପାତ ଦୁଇଟିର ଯୋଡ଼ ଖସିଯାଇଛି । ପଦରେ ଗୋଟିଏ ବେଯୋଡ଼ ଗଣି । ଦୁଇଟି ଫୁଲହାରକୁ ଯୋଡ଼ି ବଡ଼ ହାର କରାଗଲା । ଜ୍ୱାଇଁଙ୍କୁ ମାଣିଆବନ୍ଧ ଯୋଡ଼ ଦିଆଗଲା । ସେ ଦୁଇଯୋଡ଼ା ଜୋତା କିଣିଲା । ସେ ହାତଯୋଡ଼ି ପ୍ରାର୍ଥନା କରେ । ରାମ ଓ ଶ୍ୟାମର ଏକଯୋଡ଼ (ସଙ୍ଗ) ।

**ଟାଣ**—କାହାରି ଟାଣପଣ ରହିବ ନାହିଁ । ସେ ଜଣେ ଟାଣୁଆ କର୍ମଚାରୀ । ସେ ଦୌଡ଼ିକୁ ଟାଣି ନେଲା । ବର୍ଷା କାଳରେ ଆଳୁ ଦର ଟାଣ ହୋଇଯାଏ । ଲୁଗା ବୁଣାଳୀ-ମାନେ ଟାଣି ପ୍ରତି ଦୃଷ୍ଟି ଦିଅନ୍ତି । ସେ ଏ କାମ କରିବାକୁ ଟାଣି ହେଉଛି । ଗ୍ରୀଷ୍ମକାଳରେ ଟାଣ ଖରା ହୁଏ ।

**ଲେଖା**—ତାଙ୍କ ଲେଖା ଖୁବ୍ ଉନ୍ନତ ଧରଣର । ସେ ତାଙ୍କ ସାହାଯ୍ୟ ଭିକ୍ଷାକରି ଲେଖା (ଚିଠି) ପଠାଇଲେ । ସେ ମୋତେ ଖଣ୍ଡେ ଅଲେଖା କାଗଜ ମାଗିଲେ । ଅଲେଖ ବ୍ରହ୍ମଙ୍କୁ ସେ ଉପାସନା କରନ୍ତି । ଲେଖୁ ଲେଖୁ କରଣ । ସେ ମୋର ଭାଇ ଲେଖା ହୁଅନ୍ତି (ବନ୍ଧୁତାଦ୍ୱାରା ସଂଯୁକ୍ତ) । ମୁଁ ଏହାକୁ କାମ

ବୋଲି ଲେଖେ ନାହିଁ । ପିଲମାନେ ପ୍ରତ୍ୟେକେ ଗୋଟିଏ ଲେଖାଏଁ ଆମ୍ବ (ସମପରିମାଣ) ଖାଇଲେ । ତାଙ୍କର ମୋର ଲେଖା ଯୋଖା ସଂପର୍କ । ତୁ କେଉଁ ମଣିଷରେ ଲେଖା (ଗଣିବ ଜଣ) ? ଲେଖିଲେ ପଢ଼ି, ପୋଛିଲେ ନାହିଁ !

ତାର—ସେ ଅଧଘଣ୍ଟାରେ ୨୫ ତାର ସୂତା (ଖଣ୍ଡ) କାଟିପାରେ । ତାର କେହି ନାହାନ୍ତି । ସେ ଗୋଟିଏ ତାର ପାଇଁ (ଟେଲିଗ୍ରାମ) କଟକ ଗଲେ । । ଭଗବାନ ତୁମେ ! ଆମକୁ ତାର ବା ମାର ( ରକ୍ଷାକର ) । ତାରକସି କାମ ପାଇଁ ( ସୁନା ରୁପାର ସୂକ୍ଷ୍ମକାମ ) କଟକ ବିଖ୍ୟାତ । ଲୁହା ତାରରେ ସେ ବାଡ଼ ବାନ୍ଧିଦେବ ।

ଖାଇବା—ସେ ଆଜି ଭାତ ଖାଇ ନାହିଁ । ସେ ଖାଇରେ ବୂଲା ବୁଝାଇଲି । ଖାଇବା ପିଲ ରଙ୍କ ।

କାଟିବା—ମନ୍ତ୍ର ବଳରେ ସାପ କାଟିରୁ (କାମୁଡ଼ା) ସେ ରକ୍ଷା ପାଇଲି । ସେ ପନିକରେ ମାଛ କାଟିଲି । କାଟ ପାଣି (ମନ୍ତ୍ରପାଣି) ଦ୍ଵାରା ଖୁବ୍ କଥାରୁ ଫଳିଲା । ପାଞ୍ଚ ଦିନରେ ଏହି ବନ୍ଧ ବନ୍ଧାଇବା ପାଇଁ ସେ କାଟ (ଚୁକ୍ତି) ନେଲେ । ସେ ଏପରି ନିର୍ଲଜ ଯେ ତାକୁ କଥା ବା ମାଡ଼ କାଟୁ ନାହିଁ । ଆମ ସ୍ଵଭାବକୁ ସେ କାଟିଦେଲେ ( ଉଡ଼େଇ ଦେଲେ ) । ମୋ ଗୋଡ଼ରେ କଣ୍ଟା ଭୁକିବାରୁ ମୋତେ କାଟିଲି (କଷ୍ଟଲଗିଲି) । ତାର ପେଟ କାଟି ମରୁଛି ( କଷ୍ଟ ଅନୁଭବ କରିବା ) । ଚରଖାରେ ସେ ସୂତା କାଟିଲି । କାନ୍ଥ ଉପରେ ସେ ଗୋଟିଏ ଛବି କାଟିଲେ (ଅଙ୍କନ କରିବା) । ପିତାଙ୍କ ମୃତ୍ୟୁପରେ ସେ ଦୁଃଖରେ ସମୟ କାଟିଲେ ( ଅତିବାହିତ କଲେ ) । କାଠୁରିଆ ଜଙ୍ଗଲରେ କାଠ କାଟେ । ଚଷା ବିଲରେ ଧାନ କାଟେ । ବାବାଜି ତିଲକରେ ଶିଖା କାଟନ୍ତି । ସେ ଏହି

ବ୍ୟବସାୟରେ ତାଙ୍କୁ ଶଠା କାଟିଲେ (ଠକାଇ) । ମା ଅଭାବ ବେଳରେ ପେଟରୁ କାଟି ପିଲାଙ୍କୁ ପାଳନ୍ତି । ଭଣ୍ଡାରୀ ବାଳ କାଟେ । ହାକିମ ତାର ମୁଣ୍ଡକାଟ ହୁକୁମ ଦେଇଛନ୍ତି । ଗୁଣିଆର ମନ୍ତ୍ର କାଟିଲା (ଫଳ ଦେଲା) । କାଟିଆ ଶୀତକାଳୀନ ବସ୍ତ୍ରରୂପେ ବ୍ୟବହୃତ ହୁଏ । ହରି ତା ଗାଈକୁ ମାସକୁ ଅଧସେରରେ ଘିଅରେ କାଟ ଦେଇଛି ।

**ପାରିବା**—ମଧୁ ଏ କାମ କରି ପାରିବ ନାହିଁ (ସକ୍ଷମହେବା) । ବୁଢ଼ୀଟି ବସି ଘସି (ଚଳାଇବା) ପାରୁଛି । ମୋ ପାରୁ ପର୍ଯ୍ୟନ୍ତ (ଶକ୍ତି) ଚେଷ୍ଟା କରିବି । ଏହି ପଦରୁ ସେ ପାରି ହୋଇଗଲା । ନଦୀ ପାରି କରିବାକୁ ଘାଟିଆ ନାହିଁ । ବଳରେ ମୁଁ ତା ସଙ୍ଗେ ପାରିବି ( ସମକକ୍ଷ ) ନାହିଁ । ତାର ପୁଅ ପାରିଲାଣି (ଜୀବିକାର୍ଜନ ପାଇଁ), ବାପ ଏଥର ନିଶ୍ଚିନ୍ତ ହେବ । ବିଛଣା ପାରି ଦେବାକୁ ଜଣେ ଲୋକ ଦରକାର । ମାଘ ମାସରେ ବଡ଼ ପାରନ୍ତି । "ପାର ଅପାର" ବୋଲି ସମୁଦ୍ରକୁ ପାରାବାର କହନ୍ତି । ଋଷି ବସିଲେ ଆସନ ପାରି । ସେ ଗଛରୁ ଆତ ପାରିଲେ (ତୋଳିବା) । ସେ ପରୀକ୍ଷାରେ ପାସ କରିବାପାଇଁ ପାରୁପର୍ଯ୍ୟନ୍ତ ଚେଷ୍ଟାକରନ୍ତୁ ।

**ଛାଇ**—ସେ ଗଛ ଛାଇରେ ବିଶ୍ରାମ ନେଲା । ସେ ସ୍ତ୍ରୀ ଲୋକଟି ଅଳଙ୍କାରରେ ଛାଇ ହେଲା । କୋଇଲା ଛାଇରେ ରାସ୍ତା ବନ୍ଧା ହେଲା । ସେ ତା ଛାଇ ଛୁଇଁଲେ ଛୁଆନ୍ତା ହୁଏ । ତା ଛାଇ ମାଡ଼ିଲେ ମୋର ନାହିଁ ଭଏ ।

**ପାଳିବା**—ସେ ଏହି ପିଲାଟିକୁ ପାଳିଥିଲେ (ପୋଷିବା) । ପ୍ରଶ୍ନର ଉତ୍ତର ଦେବାପାଇଁ ତୁମ ପାଳି ପଡ଼ିଛି । ଆମ ସ୍କୁଲର ପିଲାମାନେ ସ୍ୱାଧୀନତା ଦିବସ ପାଳିଥିଲେ । ଠାକୁରଙ୍କ ସେବା

ପାଇଁ କେଉଁଦିନ ତୁମ ପାଳି ( ଚେଷ୍ଟାଦେବ ) ? ହାଟ-ପାଳିଦିନ ମୁଁ ତୁମ ପାଇଁ ଲୁଗା ଆଣିଛି ।

ଚର—ବନ୍ୟା ଫଳରେ ବିଲରେ ବାଲିଚର ମାଡ଼ିଗଲା । ପ୍ରତ୍ୟେକ ଗ୍ରାମରେ ଗୋଚର ରହିବା ଉଚିତ୍ । ଜଳଚର, ସ୍ଥଳଚର, ଖେଚର ପ୍ରାଣୀଙ୍କ ନାମ । ପଡ଼ିଆରେ ଗୋରୁ ଚରନ୍ତି । ସେ ଚର ଚର କରି ଗାଈ ଦୁହୁଁଛି । ରାଜା ଗୁପ୍ତଚର ପଠାଇ ସମ୍ବାଦ ସଂଗ୍ରହ କରନ୍ତି । ଏହି କାଠରେ ଉଇ ଚରିଗଲା ।

ଯାକ—ଏହି ଯାକ (ଭିଡ଼) ଭିତରେ ଯାଇ ହେବ ନାହିଁ । ଅତି ଯାକାଯାକି ହୋଇ ବସିବା ଅନୁଚିତ । ପିଲାଯାକ ମିଠାଇ ଖାଇଦେଲେ । ସେ ତାର ଗୋଡ଼ ଦୁଇଟିକୁ ଯାକିଦେଲା ।

ବାହାର—ତାଙ୍କ ଘର ଓ ବାହାର ବେଶ୍ ସଫା ଥାଏ । ଯା'ଙ୍କୁ ପୁଅ ବାହାର କରିଦେଲା । ବିଦ୍ୟାଗୁରୁ ବିଦ୍ୟାଭବନରୁ ବାହାରିଲେ । ବାହାର ଘରେ ଅତିଥି ରହନ୍ତି । ସେ ବାହାର କାମ କରିବାକୁ ବଡ଼ ମଜବୁତ୍ । ବାହାରିଆ ଲୋକଙ୍କୁ ଘର ଭିତରକୁ ନେବା ଅନୁଚିତ । କୃପଣ ଲୋକ ସହଜରେ ଟଙ୍କା ବାହାର କରେ ନାହିଁ ।

ଫୁଲିବା—ତାର ଗୋଡ଼ ଫୁଲି ଯାଇଛି ( ସ୍ଫୀତ ହେବା ) । ସେ ହାତରେ ଫୁଲ ( ଝୁମ୍ପା ) ବାନ୍ଧିଛି । ଫୁଲଏ ହଳଦୀ ସେ ହାଟରୁ ଆଣିଲା । ମଣିଷ ବୁଲିଲେ ମରେ, ବାଉଁଶ ଫୁଲିଲେ (ଫୁଲ ହେବା) ମରେ । ସେ ବାପର ଗୋଟିଏ ପୁଅ ହୋଇଥିବାରୁ (ଗର୍ବିତ ହେବା) ଫୁଲୁଛି । ନାକଫୁଲ ସେ ନାଇବ ନାହିଁ । ମାଛଟି ଫୁଲି ଗଲାଣି (ପଚିଯିବା) ।

ପାଇବା— ସେ ମହାପ୍ରସାଦ ପାଇ ଦେଲା ( ଖାଇବା ) । ବଡ଼ ଦେଉଳ ଉପରକୁ ଆଖି ପାଉନାହିଁ (ଦେଖା ନ ଯିବା) ।

ସେ ଏ ପର୍ଯ୍ୟନ୍ତ ଦରମା ପାଇ ନାହିଁ (ପ୍ରାପ୍ତ ହେବା) । ସେ ଏହି ସୁବିଧା ହରାଇ ହାଇପାଇ (ହାଲିଆ ପାଇଁ) ହେଉଛି । ତା ଗଣ୍ଡି ଏତେ ମୋଟ ଯେ ଲଙ୍ଗଳ ଦଉଡ଼ି ପାଇବ (ଅଣ୍ଟିବ) ନାହିଁ । ଶିକା ଉପରକୁ ତା ହାତ ପାଇବ ନାହିଁ (ସ୍ପର୍ଶ କରିବା) । ବେଶି ଦୂର ଯିବାକୁ ବେଳ ପାଇବ ନାହିଁ (ଅଣ୍ଟିବା) । ସେ ଏଠାରେ କାମ କରିବାକୁ ଅସୁଖ ପାଇଲା (ଘୃଣା କରିବା) । ତା କଥା ମୋ ମନକୁ ପାଉ ନାହିଁ (ଅସମ୍ମତ) । ସେ ଜଞ୍ଜାଳରେ ପଡ଼ି ବୁଦ୍ଧି ପାଇଲେ ନାହିଁ ।

ବୁଣିବା—ତନ୍ତରେ ଲୁଗା ବୁଣାଯାଏ । ଜ୍ୟେଷ୍ଠ ମାସରେ ଧାନ ବୁଣାଯାଏ ( ମଞ୍ଜି ବୁଣିବା ) । ପିଲମାନେ ଗୁଜବ ବୁଣିଦେଲେ (ବ୍ୟାପ୍ତ ଦେବା) । କେଉଟ ଜାଲ ବୁଣୁଛି । ବୁଢ଼ିଆଣୀ ଜାଲ ବୁଣି ସେଥିରେ ରହେ ।

ବୁଲାଇବା— ସେ ହଳ ବୁଲାଉଛି । ମୋ ମୁଣ୍ଡ ବୁଲାଉଛି । ସେ ରୋଗ ହେତୁରୁ ଚଲାବୁଲା କରୁ ନାହିଁ । ତେଲ ଘଣା ବୁଲାଉଛି । ଅନ୍ଧାରରେ ବାଡ଼ ବୁଲାଇବା କାମ ଏଠାରେ ଚଳିବ ନାହିଁ । ସେ ବାଡ଼ ବୁଲାଇବାରେ (ଘୂରାଇବା) ଧୂରନ୍ଧର । ସେ ବୁଲାବକାଠାରୁ ପଢ଼ିବା କଣିଲେ । ସେ ମୋତେ ବହୁତ ବୁଲାଇଲାଣି । ବାଟରେ ତାକୁ ଭୂଆଁ ବୁଲାଇଲା (ଠକାଠକ) ।

ଓଳ—ସେ ଓଳତଳେ ଶୋଇଛି । ସେ ଓଳଏ ଖାଇ ବନ କାଟେ । ସ୍କୁଲ ବର୍ତ୍ତମାନ ଦୁଇ ଓଳଆ ହେଉଛି । ସେ ଘରକୁ ଓଳାଇ ଦେବ । ସେ ଓଳଆ ବାନ୍ଧି ଧାନ ରଖିଛି । ସେ ଓଳଆରୁ ଗଜା (ଜନ୍ମରୁ) ।

**ଆଣ୍ଠୁ**—ତା ଲୁଗା ଆଣ୍ଠୁ ଟପୁ ନାହିଁ । ସେ ଆଣ୍ଠୁ ମାଡ଼ି ବସିଛି । ସେ ଆଣ୍ଠୁଏ ପାଣିରେ ପଶିଲା । ସେ ଏଡ଼େ ବଡ଼ କାମ ଦେଖି ଆଣ୍ଠେଇ ପଡ଼ିଲା । ସେ ଆଣ୍ଠେଇ କରି ଚାଲି ଯାଉଛି । ପିଲାଟି ଆଣ୍ଠେଇଲାଣି (ଗୁରୁଣ୍ଡିଲାଣି) । ଆଣ୍ଠୁଆ ଗୋପାଳଙ୍କ ମୂର୍ତ୍ତି ।

**ଦର**—ଦର ପାଚିଲା ଆମ୍ବର ସ୍ୱାଦ ମଧୁର ନୁହେଁ । ଗୁଡ଼ଜଳ କି ଦରରେ (ମୂଲ୍ୟ) ବିକା ଯାଉଛି ? ଦରପାଠୁଆ ଲୋକ ବଡ଼ ଭୟଙ୍କର । ସ୍କୁଲରେ ନଅଣ୍ଟ ହେବାରୁ ସେ ଦରଖିଆ ହୋଇ ଫେରିଲେ । ଦେବଦରରେ (ଗର୍ତ୍ତ) ଅନେକ କୁମ୍ଭୀର ଅଛନ୍ତି । ସେ ଜଣେ ଦରହସା ଲୋକ ।

**ଭାଙ୍ଗିବା**— ବର୍ଷାରେ କାନ୍ଥ ଭାଙ୍ଗିଗଲା । ଲୁଗାରେ ଭଙ୍ଗ ପଡ଼ିଛି । ବଳଦ ବାନ୍ଧିବା ପାଇଁ ସେ ଦଉଡ଼ି ଭାଙ୍ଗିଲା । ସେ ପଣା ଭାଙ୍ଗୁଛି । ଘରଭଙ୍ଗା କଥା ଶୁଣିବା ଅନୁଚିତ । ପୌଷ ମାସରେ ହାଡ଼ଭଙ୍ଗା ଶୀତ ଏ ବର୍ଷ ନାହିଁ । ସେ ହାଡ଼ଭଙ୍ଗା ପରିଶ୍ରମ କରେ । ଅଭଙ୍ଗା କଣ୍ଢେଇ କିଣି ଆଣିବା ଦରକାର । କାନ୍ଥ ଦରଭଙ୍ଗା ହୋଇ ଠିଆ ହୋଇଛି । ଭଗବାନ ସମସ୍ତଙ୍କ ଗର୍ବ ଭାଙ୍ଗିଦେବେ । ବାଡ଼ଭାଙ୍ଗି ଗୋରୁ ବାଡ଼ରେ ପଶିଲା । ଭଙ୍ଗ ଖାଇ ସେମାନଙ୍କର ନିଶା ହେଲା । କଥାଟି ଶୁଣି ଲୋକଟି ଭାଙ୍ଗି ପଡ଼ିଲା (ହତୋତ୍ସାହ) । ସେ ନିଦରୁ ଉଠି ତାଙ୍କ ଅଳସ ଭାଙ୍ଗିଲେ । ସେ ଶ୍ୱଶୁରଙ୍କ କଥାକୁ ଭାଙ୍ଗି ପାରିଲେ ନାହିଁ (ନମାନିବା) । ମୋକଦ୍ଦମାକୁ ପଞ୍ଚାୟତ ସଭାରେ ଭାଙ୍ଗି ଦିଆଗଲା (ମୀମାଂସା) । ନଦ ଭାଙ୍ଗିଗଲା । ପୁଅ ମଲା ଦିନରୁ ତାଙ୍କ ଅଣ୍ଟା ଭାଙ୍ଗିଗଲା (ମନଦୁଃଖ) । ସେ ମୋଡ଼ି ଭିଡ଼ି ହୋଇ ଅଳସ ଭାଙ୍ଗିଲା (ଦୂରକରିବା) ।

ସେ ନଳ ଭଙ୍ଗୁଛନ୍ତି (ଜମିର କ୍ଷେତ୍ରଫଳ ସ୍ଥିର କରିବା) । ଶେଷରେ ଭାଡ଼ ବେଶି ହେବାରୁ ସଭା ଭାଙ୍ଗିଲା । ରାମର ଦେହ ଭାଙ୍ଗିଗଲାଣି (ଦୁର୍ବଳ) ।

ପୋଖତ— କଥାରୁଟି ବର୍ତ୍ତମାନ ପୋଖତ ହେଲାଣି । ସେ ଜଣେ ପୋଖତ କର୍ମୀ । ପୋଖତ ସ୍ତ୍ରୀଲୋକର ପଥ୍ୟ ସମ୍ବନ୍ଧରେ ସାବଧାନ ହେବା ଉଚିତ ।

ଫୁଟିବା— ବଗିଚାରେ ଫୁଲ ଫୁଟିଛି (ପ୍ରସ୍ଫୁଟିତ ହେବା) । ଛୋଆଖି ଫୁଟିଯାଉ । ଚାଉଳ ଫୁଟି (ଫୁଟି କାକୁଡ଼ି) ସେ ଖାଏ । ରାସ୍ତାଟି ଦଉଡ଼ (କାଦୁଅ) ଫୁଟି ଯାଇଛି । ତୁମ ଘରେ ହାଣ୍ଡି ଫୁଟିଲେ ବାସନା ଆମ ଘରକୁ ଆସେ । ଭାତ ଫୁଟିଗଲେ ଗଳାଯିବ । ଖଇ ଫୁଟିଲା । ସେ ହାଣ୍ଡିଫୁଟା କଣିବ (ଫୁଟଣ) । ବନ୍ଧୁକ ଫୁଟିଲା । ଦରଫୁଟା (ଫୁଟି ନ ଥିବା) ଫୁଲ ତୋଳିବା ଉଚିତ ନୁହେଁ । ସେ ଫୁଟାପାଣି ପିଇବ ଏବଂ ଫୁଟା ତେଲ ଲଗାଇବ । ଫୁଟା (କଣାଥିବା) ହାଣ୍ଡିରେ ରାନ୍ଧିବ ନାହିଁ । ରୋଷଘରେ ନିଆଁ ଲାଗିବାରୁ ବାଉଁଶ ଗଣ୍ଠି ଫୁଟିଲା । ଛତୁ ଫୁଟିଲା ପରି ସ୍କୁଲ ସବୁ ଏବେ ହୋଇ ଯାଉଛି । ତାଙ୍କ ବିବାହ ଦିନ ଶହେ ଟଙ୍କାର ବାଣ ଫୁଟିଲା । ପାଣି ଫୁଟିଲା (ଗରମ ହୋଇ ଟକଟକ ଶବ୍ଦ କରିବା) ।

ବଳ— ସେ କୁଟାରେ ଦୌଡ଼ି ବଳିଲା । ଲୋକମାନେ ଖାଇଗଲା ପରେ ବହୁତ ଭାତ ବଳିଲା । ତା ଦେହ ବଳିଲା ପରି ହୋଇଛି । ଦୌଡ଼ି ବଳଦିଅ । ଠାକୁରାଣୀଙ୍କ ପାଖରେ ବଳି ଦିଆଯାଏ । ତାଠାରୁ ବଳି ବୁଦ୍ଧିମାନ୍ ଲୋକ ନାହାନ୍ତି ।

**ମାରଣା**— ମାରଣା ବଳଦ ରହିଛି ଅନାଇଁ । ଘର କରଣା ଝିଅ ମାରଣା ।

**ବାର**— ଆଜ ବୁଧବାର (ସପ୍ତାହରବାର) । ବାର ମାସରେ ଏକ ବର୍ଷ ହୁଏ (ସଂଖ୍ୟା) । ଆମ ଘରକୁ ଆସିବାକୁ ମୁଁ ତାଙ୍କୁ କେତେବାର (ଥର) କହିଛି । ସେ କଥାଟି କହୁଥିଲା, କିନ୍ତୁ ସେ ବାର ଦେବାରୁ ସେ ବନ୍ଦ ହେଲା (ବାରଣ କରିବା) । ସେ ଭଲ ମନ୍ଦ ବାଛେ ନାହିଁ, ଯାହା ହେବ ସବୁ ଖାଇଦିବ (ଜାଣି) । ବାର ଦିନରେ ବ୍ରାହ୍ମଣ ଭୋଜନର ବ୍ୟବସ୍ଥା କରାଯାଇଛି । ବାରବର୍ଷ ପରେ ସେ ଶୁଦ୍ଧ ହେଲେ । ବାର-ବେଳାରେ (ଅଶୁଭ ସମୟରେ) ଘରୁ ବାହାରିବା ଅନୁଚିତ ।

**ତେଲ**— ତେଲ ହଳଦୀ ସାର ନାହିଁ; ପୁଅକୁ ନୁଖୁରା କର ନାହିଁ । ଗୁଡ଼ ଖୁଆ ଖୁଆଇ ସରେ, ତେଲ ମାଖୁ ମାଖୁ ସରେ । ମୁଣ୍ଡକେ ପଗଡ଼ି ପାଦରେ ତେଲ, ବଇଦ ସଙ୍ଗେ କରିବ ଗେଲ । ତେଲ ତେଲ ଦିଏ । ସେ ତା ମୁନିବଙ୍କୁ ତେଲ ଦେଉଛି (ଖୋସାମତ କରିବା) । ତେଲିଆ ମୁଣ୍ଡରେ ତେଲ ।

**ଖଣ୍ଡ**— ସେ ମୋତେ ଖଣ୍ଡେ ପାନ ଦେଲା । ସେ ବାଉଁଶକୁ କାଟି ଖଣ୍ଡ ଖଣ୍ଡ କରିଦେଲା । ସେ ଖଣ୍ଡିଆ ଖାଇବା ହୋଇ ରକ୍ଷାପାଇଁ ଯାଇଅଛି । ଭଗବାନ୍ ତାର ଦୁଃଖ ଖଣ୍ଡିବେ । ଶ୍ରୀକୃଷ୍ଣ ଖଣ୍ଡକ୍ଷୀର ଖାଇ ବଢ଼ିଥିଲେ । ସେ ତାର ଯୁକ୍ତି ଖଣ୍ଡନ କଲେ । ଏ ଖଣ୍ଡକରେ ତାଙ୍କପରି ଯୋଦ୍ଧା ନାହାନ୍ତି ।

**କାଳ**—ତାଙ୍କର କାଳ (ମୃତ୍ୟୁ) ହେଲା । କାଳର ଗତି (ସମୟ) କୁଟିଳ । କାଳକ୍ରମେ ଏହା ନଦୀରେ ପରିଣତ ହେବ । ଏହା କାଳ କାଳକୁ ରହିବ । ସର୍ବେ ଚଳିବେ କାଳବଳେ (ଯମ), ଯଶ ରହିବ ମହୀତଳେ । ଯାହା ହୋଇ ନାହିଁ କାଳକାଳେ, ତାହା ହେବ ନାହିଁ କାଳେ କାଳେ । କାଳକୁ

ସେ ଆସି ପହଞ୍ଚିଲା । କାଳକଣ୍ଠର ଅର୍ଥ ଶିବ, ମୟୁର ଓ ଖଞ୍ଜନ ପକ୍ଷୀ ହୁଏ ।

ପଣ— ୮୦ ଗୋଟାରେ ଏକପଣ ହୁଏ । ସେ ଏ କାମ କରିବା ପାଇଁ ପଣ (ପ୍ରତିଜ୍ଞା) କରିଛି । ସେ ପଣ ରଖି ପଶା ଖେଳୁଥିଲେ । ତୁମପର ପଣେ, ମୋପର ଜଣେ । ସେ ହିଁ ଅଟି ତୁମ ସ୍ୱାମୀରେ ସୁଖୀଳ ଅଛନ୍ତି । ସେ ପ୍ରାଣୋପଣେ ଲଗି ଏ କାମ କରିବ । ପଣେ କଦଳୀର (୮୦ ଗୋଟା) ଦାମ୍ କେତେ ? ତାଙ୍କ ବଡ଼ପଣ ରହିବ ନାହିଁ । "ଭବେ ଖଟିବେ ଭୃତ୍ୟପଣେ ।"

ତାଳ— ସେ ତାଳ ସାଉଣ୍ଟିବାକୁ ସକାଳେ ଗଲା । ସେ ମୋ ସାଙ୍ଗରେ ତାଳ ଦେଇ ଗୀତ ଗାଉଥିଲେ । ମାଳଆ ଗାୟକଙ୍କ ସଙ୍ଗିତ ତାଳ ଦେଇ ପାରୁନାହିଁ । ସେ ମୃଦଙ୍ଗ ଓ କରତାଳ ଦେଇ ଗାଉଛି । ବକ୍ତୃତା ଶେଷରେ ପିଲାମାନେ କରତାଳି ଦେଲେ । ଚିରା ଲୁଗାରେ ସେ ତାଳି ପକାଇ ପିନ୍ଧୁଛି । ଏଥର ପୋଖରୀରେ ବନ୍ୟା ଆସିଲା ଯେ ବୃତ୍ତିକ ଭିତରେ ତାଳେ ପାଣି ହୋଇଗଲା । ସେ ପିଲାଟିଏ ହେଲେ କଣ ହେବ, ତାଳେ ଗଣ୍ଡାରରୁ କଥା କହିବ । ଦଣ୍ଡିକର ମାଛ ତଳେ ପାଣିରେ ମୁଣ୍ଡ ଟେକେ ।

ଗୁଞ୍ଜା— ସେ ଗୃହରେ ଗୁଞ୍ଜା ଦେଲେ । ସେ ମୋତେ ଅଣ୍ଟାଗୁଞ୍ଜା ଦେଲେ । ପୋଷାପୁଅ, ଗୁଞ୍ଜା ରୁଅ । ପିଲାମାନେ ଗୁଞ୍ଜାରେ ଖେଳୁଛନ୍ତି ।

ଗାଳିବା— ସେ ପେଜ ଗାଳିଲେ (ବାହାର କରିବା) । ସାପ ବିଷ ଗାଳିଲା (ଉଦ୍‌ଗାର କଲା) । ସେ ମୋତେ ଗାଳି ଦେଲା । 'ଅଗଲା ଭାତ ଖାଇବା ଭଲ ! ସେ ଗଳାରେ ମାଳ ପିନ୍ଧିଛି । ମୁଁ ତାହାର ପିଠି ଗାଳି ଦେବି ।

**ଗୁଟ—** କଣ। ଜନିଷ ଖାଇବାପାଇଁ ସେ ଗୁଣ୍ଠ୍ ଦରକାର କରୁଛି । "ଗୁଣ୍ଠଘର ପୁଅ ଗୁଣ୍ଠ । ଘଣ୍ଟଘର ପୁଅ ଘଣ୍ଟ ।" ସେ ମନ୍ତ୍ର ଗୁଣିଲା । ଗାଈ ବାଛୁରୀକୁ ଗୁଣ୍ଠୁଛି । ସେ ଗୁଣ୍ଠଶାଳୀରେ ପାଠ ପଢ଼େ । ମଧୁ ଆମ ଶ୍ରେଣୀର ବଡ଼ ଗୁଣ୍ଠ । ସେ ତାର ଗୋଡ଼ ଗୁଣ୍ଠୁଛି (ଖୋସାମତ କରିବା) । ଚଟ୍ଟଗୁଣ୍ଠ କାମସାର ସ୍କୁଲକୁ ଯାଅ ।

**କାତ—** ସାପ ଏଠାରେ କାତ ଘୁଞ୍ଚୁଛି । ମାଛ କାତରେ ସେ ଖେଳଣା କରିବ । ଗୁଆକାତରେ ଗୁଆ କଟାଯିବ । ଖପରା କାତରେ ସେମାନେ ଖେଳୁଛନ୍ତି । ମୁଁ କାତଖେଳ ଦେଖି ଯାଇଥିଲି ।

**ପର—** ମୟୂରପର ସେ ମୁକୁଟରେ ଲଗାଇଲେ । ସେ ମୋତେ ପର କରିଦେଲେ । ପରବର୍ତ୍ତୀ କାଳରେ ସେମାନେ ସୁଖରେ ରହିଲେ । ଉପରପର ଜ୍ଞାନ ତାଙ୍କର ନାହିଁ । ତୃତୀୟପର ସମ୍ପର୍କ ସହିତ ବୁଝାଇବାପାଇଁ ସେ କହିଲେ । ପରପୁଅ ଘରର, ନିଜ ପୁଅ ହାତର ।

**ପଡ଼ିଆ—** ପିଲାମାନେ ପଡ଼ିଆରେ ଖେଳନ୍ତି (ଘାସଭୂଇଁ) । ସେ ପଡ଼ିଆ ଜମିରେ (ଅନାବାଦ ଜମି) ଚାଷ କରୁଛି । ଗାଈଟି ଏବେ ପଡ଼ିଆ (ବହୁଦିନରୁ ଦୁଧ କମାଇବା) ହେଲାଣି । ପଡ଼ିଆ ଜୁଆରରେ ମାଛ ବେଶି ମରନ୍ତି ନାହିଁ । ପଡ଼ିଆମଣ୍ଡାଣି ଗାଈ (ପ୍ରତିବର୍ଷ ପିଲା ପ୍ରସବ ନକରି) ପୋଷିବା ଭଲ ନୁହେଁ । ସମସ୍ତଙ୍କ ଜୀବନରେ ପଡ଼ିଆ ଉଠିଆ (ଉତ୍‌ଥାନ ପତନ) ଅଛି । ପଡ଼ିଆ ସୁନା । କାମ ପଡ଼ିଆ ରଖୁଛ ।

**ହାଟ**— ସେ ଆଜି ହାଟକୁ ଯାଇନାହିଁ । ହାଟ ସରିଲେ କେହି କାହାରିକୁ ଚିହ୍ନିପାରିବେ ନାହିଁ । ତାଙ୍କ ଘର କଜିଆ ଲାଗି ଛନଦନ ହେଲ ସେଠାରେ ହାଟ ବସିଛି । ଏହି କଥା ଦାଣ୍ଡରେ ପଡ଼ି ହାଟରେ ଗଡ଼ାଗଡ଼ି । ଆମ ଗାଁରେ ପ୍ରତିବର୍ଷ ହରିହାଟ ହୁଏ । ହାଟ ଭିତରେ ବ୍ରହ୍ମଜ୍ଞାନ । ଧାନ ଫୁଲ-ହାଟ ବସାଉଛି, ଏ ସମୟରେ ପବନ ହେଲେ ସର୍ବନାଶ । ତାଙ୍କ ନାମରେ ହାଟ (ଅପବାଦ) ବସିଛି ।

**ଗାର**—"ମୁଣ୍ଡ ନୁଖୁର, ଦେହରେ ଗାର; ଜାଣିବ ତାହାକୁ ଅର୍ଜ୍ଜୁନକାର ।" ବାଇଗଣ ଗାର କେତେ ? ସେ ମୋ ଖାତାରେ ଗାରେଇଲ । ଆମ ବୁଢ଼ାବାପାଙ୍କ କଥା ବେଦର ଗାର । ତାଙ୍କ ସଙ୍ଗେ ବନ୍ଧୁତା ପାଣିର ଗାର ପରି । ପଢ଼ା ବହିରେ ଗାର (ଦାଗ) ଦଅନାହିଁ । ସେ ଗାର (ରେଖା) ଟାଣି ତା ମଧ୍ୟରେ ହସ୍ତାକ୍ଷର ଲେଖୁଛି । ପ୍ରତ୍ୟେକ କଥାରେ ସେ ଗାର ଦିଏ (ସମାଲୋଚନା, ରୋକିବା) ।

**କୂଟ**—ସେ କୂଟମିତ୍ର ( କପଟ ) ରେ ପାରଗ । ତାଙ୍କ କୂଟ (କପଟ) ରେ ଦେବତା ପଶି ପାରିବେ ନାହିଁ । ଏହା ଦେବତାଙ୍କ କୂଟ । ରାମଚନ୍ଦ୍ର ଚିତ୍ରକୂଟରେ ବାସ କରୁଥିଲେ ।

**କୁଟିବା**—ତୁମେ ଧାନ କୁଟ କି ? ଉଠ ବୁଢ଼ା, କୁଟ ଚୂଡ଼ା । ତୁମେ ହାତରେ ଚିଟା କୁଟ; ମୁଁ ବସୁଛି । ଯେତେ କୁଟା ଖାଇଲେ ବି ତା ମୁହଁକୁ ଲାଜ ନାହିଁ । ଢେଙ୍କିକୁଟା ଚାଉଳ ଭଲ । ମହାଜନଘର ଧାନ କୁଟା ହଉଛି । କୁଟା ଗୁଡ଼ିଆଣି ଘର ନରାପଡ ନୁହେଁ । ମାଂସ କୁଟାକୁଟି କରି ରଖ । ସେ ଚିଡ଼ାକୁଟା ଜାଣେ ।

ମାଣ— କଟକ ସହରରେ ଜମି ମାଣକ କୋଡ଼ିଏ ହଜାର ଟଙ୍କାରୁ ବେଶି । ଟୁଙ୍ଗକୁ ମୂଷି, ଧାନ ମାଣକ ଖାଇ ଥା ବସି । ମାଣ ମୂଳ ଔଷଧରେ ଲାଗେ । ମାଣ ପୂରିଲେ କେହି ଅଟକାଇ ପାରିବ ନାହିଁ । ତାଙ୍କର ଖାଇବା ପରିମାଣ କମିଗଲା । ଜଣେ ପଶିଲେ ମାଣେ ପଶେ ।

ଖୁଣ୍ଟା— ଶାଶୁ ଓ … ଙ୍କ ଖୁଣ୍ଟା ସହିବା ସହଜ କଥା ନୁହେଁ । ସେ ନଆଁ ଖୁଣ୍ଟା (ଦରପୋଡ଼ା କାଠ) ଆଖିରେ ଭୂଷିଦେଲେ । ତାଙ୍କର ପିତ୍ତଳ ଦାନ୍ତଖୁଣ୍ଟା ଅଛି । ସେ ଜଙ୍ଗଲରୁ ଖୁଣ୍ଟା (ଶାଖାହୀନ ମଲା ଗଛ) ଉପାଡ଼ିଲେ । ସେ ଏହି ମାଛଟିକୁ ଖୁଣ୍ଟିଦେଲେ । ସେ ଗୁଜୁଳ ଖୁଣ୍ଟିଦେଲେ । ତାଙ୍କର ମାଛ ଖୁଣ୍ଟାଖୁଣ୍ଟି ଚାଲିଛି । ରାଇ ଖୁଣ୍ଟିଲେ (ସଂଗ୍ରହ କଲେ) ବେଲ ।

କଳା— ହନୁମାନଙ୍କ ମୁହଁ କଳା । କଳାକାହ୍ନୁ (ଶ୍ରୀକୃଷ୍ଣ) କୁହୁକ ଜାଣେ । ଆମ ଦେଶର ପ୍ରାଚୀନ କଳା ପ୍ରତି ସମସ୍ତଙ୍କର ଧ୍ୟାନ ରହିବା ଉଚିତ । କଳା ରୋଗ ହେଉ ପୃଥିବୀରୁ ଶୀଘ୍ର ଲୋପ ପାଇବ । ସେ ମଣିଷ ମାରିଥିବାରୁ ତାକୁ କଳାପାଣି ପାର କରି ଦିଆଗଲା । ଶ୍ୱଶୁର ଘରେ ଯାହା ଖାଇଲେ ମଧ୍ୟ ଝିଅର ବାପଘରର କଳା ପାଣିକୁ ଆଶା ଥାଏ । କଳା ବଜାରରେ ସଉଦା କରିବା ଅନୁଚିତ । ଉଷୁନା ଧାନ ହାଣ୍ଡିକଳା ସେ କୋଠି ନେଲା । ସେ ତାଙ୍କ କଳା ଜମି ବନ୍ଧକଦେଲେ । ଚୋର ତାଙ୍କ ଘରେ କଳାକନା ବୁଲାଇ ଦେଲେ । ଚନ୍ଦ୍ରକଳାର ହ୍ରାସ ବୃଦ୍ଧି ଘଟେ । ରାମ ବଡ଼ ଚୋର, ସେ ସେହି କଳାରେ ଜନ୍ମିଛି । ଅର୍ଜୁନ ଶ୍ରୀକୃଷ୍ଣଙ୍କ କଳା ନେଇଥିଲେ । କାନ୍ଦି କାନ୍ଦି ତା ମୁହଁ କଳାକାଠ ପଡ଼ିଗଲା । ମା … ଙ୍କ ଆଖିରେ

କଳାପାତିରୁ କଳା ଲଗାଇ ଦେଲେ । ତାଙ୍କର ଏତେ ଲାଗ ଲାଗ ବଦଳ ହେଉଛି ଯେ ତାଙ୍କ ହାଣ୍ଡିରେ କଳା ପଡ଼ୁନାହିଁ ।

ଗରମ—ମୋତେ ଗରମ ଲାଗୁଛି । ପୂଜାପାଇଁ ବଜାର ସବୁ ଗରମ ହୋଇଛି । ତାଙ୍କର ଗରମ ଲୁଗା (ପଶମ ବସ୍ତ୍ର) ନାହିଁ । ମୂଷିକ ଭୂତର ଉପରେ ଗରମ (ବିରକ୍ତ ହେବା) ହେଲେ । ଭଗବାନ ତୁମ ଗରମ (ଗର୍ବ) ସହିବେ ନାହିଁ । ବୈଶାଖ ମାସର ଗରମରେ (ତାତି) ଆମ୍ବ ପାଚେ । ରୋଗୀକୁ ଗରମ ଘିଅ ଦିଆଯାଏ ।

ଥଳି—ମଧୁର କଲମ ଥଳି । ସେ ଜଣେ ଥଳିବାଲା (ଧନୀ) ଲୋକ । ନଅଳି ଘରେ ପୁଅ ଜନ୍ମିଛି ।

ଘଡ଼ି—ତୁମ ଘଡ଼ିରେ କେତେ ବାଜିଛି ? ଆଳତି ସମୟରେ ଘଡ଼ି ଘଣ୍ଟା ବାଜି ଉଠିଲା । ଘଡ଼ିରେ ତେଲ ନାହିଁ । ଦିନ ଦୁଇଘଡ଼ି ପର୍ଯ୍ୟନ୍ତ ସେ ଶୋଇଲା । ଆଜି ଖୁବ୍ ଜୋରରେ ଘଡ଼ଘଡ଼ି ମାରିଲା । ଘଡ଼ିସନ୍ଧି ବେଳରେ ସେ ସ୍ଥିର ବସିରହି କରି ପାରିଲେ ନାହିଁ । ରୋଗୀର ଅବସ୍ଥା ଏପରି ଆଶଙ୍କାଜନକ ଯେ ଘଡ଼ିକେ ଘୋଡ଼ା ଛୁଟୁଛି ।

ପାଣି—ମଧୁ ପାଣି ପିଇଲା । ରାମ ସୀତାଙ୍କ ପାଣି ଗ୍ରହଣ (ବିବାହ) କଲେ । ବୁଢ଼ୀମା ବଡ଼ ଭୋରରୁ ଉଠି ପବିତ୍ର ପାଣି ପକାନ୍ତି । ହଡ଼ା ବଳଦକୁ ପାଣିଏ ମାଇଲେ ପାଣିଏ ସଇ । ସେ ଏହି କଥାକୁ ପଡ଼ି ପଡ଼ି ପାଣି କରିଦେଲା । ଏହି କଥା ଶୁଣି ତାର ପିଳିହା ପାଣି ହେଲା । ମେଘ ଏ ବର୍ଷ ପିଠାପାଣିଆ କରିଛି । ଗାଈକୁ ତିନିପାଣି କରି ଦୁହାଁ ଯାଉଛି । ବାଇଗଣ ଗଛ ଆଜ

'ପାଣିଏ ପାଇଲେ ଫୁଲ କସି ଧରବ । ଶ୍ରୀ ମଧୁସୂଦନ ପାଣି ଆମ ସଙ୍ଗରେ ପଢ଼ନ୍ତି । ସେ ମଣିଷ ମାର ଥିବାରୁ ତାକୁ କଳାପାଣି ପାରକର ଦିଆଗଲା । କ୍ଷୀର ପାଣି ଫାଟିଗଲା । ସେ ଟଙ୍କାତକ ପାଣିରେ ପକାଇ ଦେଲା (ବୃଥା ବ୍ୟୟ କରିବା) । ସେ ପରସ୍ତ୍ରୀ କର ପାଣି ଘେନନ୍ତି । ଏହି ଦଲୁଆ ପୋଖରୀ ପାଣି ଧରିଲା । ପାଦପାଣି ନାହିଁ ବୁଲୁଛନ୍ତି (ହସ୍ତ, ଖ୍ରୀମଘ୍ରେଇ) ।

କଡ଼—ଘୋରକୁ ହାତକଡ଼ ପକାଗଲା । ତାଙ୍କ ଘରେ ଦହିକଡ଼ କରିଛନ୍ତି । ଫୁଲକଡ଼ଟିକୁ ଛିଣ୍ଡାଇବା ଉଚିତ ନୁହେଁ । ଘରପାଇଁ କଡ଼ ଓ ବରଗା ଅଣା ଗଲାଣି ।

ପଡ଼ିବା—ମଧୁ ହଠାତ୍ ବେମାର ପଡ଼ିଲା । ଘେଡ଼ିବାଦନ ପଡ଼ ଧଡ଼କାରେ (ବସ୍ଥାଇବା) ଡେରି ହେଲା । ରଜାଘରା ପଡ଼ରେ (ସଙ୍ଗା) ସେ ଚାଲନ୍ତି । ଗତବର୍ଷ ମାଜପୁରରେ ସ୍ନାନଯୋଗ ପଡ଼ିଥିଲା । ଏବର୍ଷ ଦୁର୍ଭିକ୍ଷ ପଡ଼ିବ । ଉପରେ ପଡ଼ି କଥା କହିବା ଅନୁଚିତ । ତାଙ୍କ ପାଳି ପଡ଼ିବାରୁ ସେ ଉତ୍ତର ଦେଲେ । ଏତେବେଳେ ତାଙ୍କ କପାଳ ପଡ଼ିଛି । ସେ ଯାହା କହିବ ସେ ସବୁ ସହିବ (ଦୁର୍ଯୋଗ) । ସେମାନେ ଟଙ୍କା ପଇସା କରି ଖୁବ୍ ଉଠିଥିଲେ; କିନ୍ତୁ ଏବର୍ଷ ପଡ଼ିଗଲେ (ଗରିବ ହେବା) । ତୁମ ଗାଁକୁ ଏହି ରାସ୍ତା ପଡ଼ିଛି । ହାଟରେ ଆଜି ମାଛ ପଡ଼ିଛି ( ମିଳୁଛି ) । ଏବେ ଏଣିକି ଶୀତ ପଡ଼ିଯିବ । ସେ ବିଛଣାରୁ ହଠାତ୍ ଉଠିପଡ଼ିଲା । ସେ କୁସଙ୍ଗରେ ପଡ଼ିଲେ (ଆସକ୍ତ ହେଲେ) । ନଦୀ ସମୁଦ୍ରରେ ପଡ଼ିଛି (ମିଶିଛି) । ଆପଣ ମୋ ପାଖରେ ବସିବାରୁ ମୋତେ ମାଡ଼ ପଡ଼ିଲା । ଏକଥା ତାଙ୍କ କାନରେ ପଡ଼ନାହିଁ

(ନ ଜାଣିବା) । ମଧୁର ଗ୍ଟାଇ ପଡ଼ିଲେ ସାଧୁର ନାହିଁ ଡେଉଁଛୁ । ସେ ତାଙ୍କ ଗୋଡ଼ତଳେ ପଡ଼ିଲେ । ସୂତାରେ ଗଣ୍ଠି ପଡ଼ିଛି । ବର୍ଷା ପଡ଼ିଲା । ଟିଣରୁ ତେଲ ପଡ଼ିଲା । ଗାଡ଼ିରେ ଗଲେ ଭଡ଼ା ପଡ଼ିବ (ଦେବାକୁ ହେବ) । ଅଶୋକଙ୍କ ଶାସନମାନଙ୍କରୁ ଏ ବର୍ଷ ପ୍ରଶ୍ନ ପଡ଼ିବ । ଜମି ଖଣ୍ଡିକ ମହାଜନଙ୍କ ପାଖରେ ବନ୍ଧା ପଡ଼ିଛି । ଝିଅ ବବାହପାଇଁ ଟଙ୍କା କରଜ କରିବାକୁ ପଡ଼ୁଛି (ଆବଶ୍ୟକ ହେବା) । ମୋ ଲାଗି ସେମାନେ ଦୁଇଦନ ହେଲା ପଡ଼ିଛନ୍ତି (ଅପେକ୍ଷା) । ଏ ବିଷୟ ସଭାରେ ପଡ଼ିବ (ଆଲୋଚିତ ହେବ) । ଦେଉଳ ତୋଳିଲେ ନା ପଡ଼େ (ବିଖ୍ୟାତ ହେବା) । ପନଖିର ଦାନ୍ତ ପଡ଼ିଗଲାଣି (ଦନ୍ତହୀନ ହେବା) । ଗୋରୁ ଗାଈଙ୍କୁ ଠିକ୍ ଭାବରେ ଖାଇବାକୁ ନ ଦେଲେ ସେମାନଙ୍କ ନିଶ୍ୱାସ ପଡ଼ିବ (ଅଭିଶାପ) । ତୁମେ ଏପରି କାମ କରୁଛ, ତୁମ ପିଠିରେ ପଡ଼ିବ (ସାହାଯ୍ୟ କରିବା) କିଏ ? ତାଙ୍କ ପ୍ରଶଂସାରେ ସେ ରାଜ୍ୟ ଉଠୁଛି ପଡ଼ୁଛି (କମ୍ପିବା) ।

**ଆସିବା** – ମଧୁ ଆଜି ଆମ ଘରକୁ ଆସିଲେ । ମୋତେ ଏହି ପ୍ରଶ୍ନର ଉତ୍ତର ଆସୁନାହିଁ । ଆଜି ସକାଳେ ମୋତେ ଜ୍ୱର ଆସିଲା । ଗୋବିନ୍ଦ ଷ୍ଟେସନ ଯାଉଥିଲେ, ବାଟରୁ ସେ ଆସିଲେ । ବୁଦ୍ଧି ନ ଆସଇ ଘରକୁ, କହି ଦେଉଥାଇ ପରକୁ ।

**ବୁଡ଼ିବା** – ବେଳ ବୁଡ଼ିଲା ଓ ସଞ୍ଜ ହେଲା (ସୂର୍ଯ୍ୟ ଅସ୍ତ ହେବା) । କଇଁଛଟି ପାଣିରେ ବୁଡ଼ିଲା । ମଧୁବାବୁଙ୍କ ମୃତ୍ୟୁପରେ ତାଙ୍କ ଘର ନାଁ ବୁଡ଼ିଲା (ଲୋପ ପାଇଲା) । ସେ ଋଣରେ ବୁଡ଼ିଲାଣି (ଋଣ ମଗ୍ନ ହେବା) । ଘର ବୁଡ଼ି ପାଣି ଆଣୁଏ ।

ସେହି ଦରିଦ୍ର ଲୋକଟି ମୋଠାରୁ ଟଙ୍କା ଧାର ଥିଲା, ସେ ମରିଯିବାରୁ ମୋ ଟଙ୍କା ବୁଡ଼ିଗଲା (ଅନ୍ୟଠାରେ ଥିବା ଧନ ଆଦାୟ ହୋଇ ନ ପାରିବା) । ତାଙ୍କ କୁଳ ବୁଡ଼ିଲା (ବଂଶଲୋପ ପାଇଲା) ।

ମନ୍ଦ— ମଧୁର ସ୍ୱଭାବ ମନ୍ଦ ନୁହେଁ । ଦକ୍ଷିଣା ପବନ ମନ୍ଦ ଗତିରେ ପ୍ରବାହିତ ହେଉଅଛି । ଭଲ ମନ୍ଦ ଜ୍ଞାନ ତାର ନାହିଁ । ସେ ମନ୍ଦେ ପାଣି ପିଇଲେ । ଭଲରେ ବା ମନ୍ଦରେ ସେ ଭଗବାନଙ୍କୁ ଭରସା କରିଥାନ୍ତି । ସେ ଶାଗ ମନ୍ଦାରେ ପାଣି ଦେଲେ ।

ଛଡ଼ା— ଲକ୍ଷ୍ମୀଛଡ଼ା ଲୋକକୁ କେହି ଆଦର କରନ୍ତି ନାହିଁ । ଗୋଟିଏ ପିଲା ଛଡ଼ା ଏହି ବିଷୟରେ ଆଉ କେହି ନାହିଁ । ମାଈ ବାଛୁରୀକୁ ଛଡ଼ା କହନ୍ତି । ଠାକୁରଙ୍କ ଛଡ଼ାଫୁଲ ସେ ଘରକୁ ନେଲେ । ମୋ ମା ସକାଳେ ଚୂଳଛଡ଼ା ଦିଅନ୍ତି । ମଧୁ ଏ ପର୍ଯ୍ୟନ୍ତ ମୋତେ ସାହସ ଦେଇଥିଲା; କିନ୍ତୁ ଠିକ୍ ବିପଦ ବେଳରେ କରଛଡ଼ା ଦେବା ଦୁଃଖର କଥା । ପିଲାମାନେ ମିଠାଇ ଛଡ଼ାଛଡ଼ି ଲାଗିଲେ । ବ୍ଲେପା ଛଡ଼ା କାମ ସରିଛି, ଏବେ ପରିବା ଯୋଗଡ଼ା ଯିବ । ପିଲାମାନେ ଛଡ଼ାଛଡ଼ି ହୋଇ ବସିଛନ୍ତି । ଆମ ଘରଠାରୁ ସେ ଟିକିଏ ଛଡ଼ାରେ ଅଛନ୍ତି । ସେ ଛେନାରୁ ବ୍ଲେପାଛଡ଼ା କଥା କହନ୍ତି । ଛଡ଼ା ମୁଦ୍ଗରଥ ମଲ୍ଲ ଘୋଡ଼ା ସଙ୍ଗେ ସମାନ ।

କଟା—ଘାସ କଟାରେ ସେ ଖୁବ୍ ପାରଗ । ତୁମ କଥା କଟା ଦାରେ ଚୂନ ଦେଲା ପରି । ନଦୀପୁର କଟାରେ ଏଥର ଖରାଦିନେ ପାଣି ରହିଲା ନାହିଁ । ପିତାଙ୍କ ମୃତ୍ୟୁ ସମ୍ବାଦ ପାଇ ସେମାନେ କନ୍ଦାକଟା କଲେ । ପରିବା କଟାକଟି

ହୋଇଛି, ଚୂଳ ଲଗିଲେ ରନ୍ଧା ପିବ । ସେ ହାତକଟା ସୂତାରେ ଲୁଗା କରୁଛି ।

ଝାଡ଼ିବା – ସେ ଝାଡ଼ୁରେ ଘରକୋଣ ଝାଡ଼ିଲା । ତାପମାନ ଯନ୍ତ୍ରକୁ ବ୍ୟବହାର କରିବା ପୂର୍ବରୁ ଭଲ ଭାବରେ ଝାଡ଼ିବ । ଗୁଣିଆ ଝାଡ଼ିବାରୁ ତା ଜ୍ୱର ଭଲ ହେଲା । ଜଡ଼ିଗଲା ଗେଣ୍ଡାଳିଆ ଝାଡ଼ିଦେଲା ପରି । ଚମାର ଚାଳଗଛକୁ ଝାଡ଼ି ଦେଲା । ଧଡ଼ଧଡ଼ ଅଙ୍କାକରି ଝାଡ଼ିଦେଲେ ( ଗାଳି ଦେଲେ ) ତା ଭଦ୍ରଲୋକ ଗୁଡ଼ପିବ । କେତେ ଝାଡ଼ି ହେଉଚୁ ( ରାଗରେ ଚମଚମ ହେବା )

ବସିବା— ସେ ଠିଆ ହୋଇଥିଲା, ଏବେ ବସିଛି । ଆଜିକାଲି ସେ ଘରେ ବସିଛି (ବେକାର) । ଦଶହରାରେ କମାର ସାଜସଜ ପୂଜାରେ ବସେ । ତାଙ୍କ ଘରେ ଆଜି ମାଣ ବସିଛି । ଶୀତ ଦିନରେ ଦହି ବସିଥାଏ (ଜମାଟ ବାନ୍ଧେ) । ସେ ଅନେକ ଟଙ୍କା ଧରି ବସିଛି । ମାଟି ବସିଯିବାରୁ ବନ୍ଧଟି ନଷ୍ଟ ହେଲା ( ଦବିଯିବା ) । ଗୋଳିଆପାଣି କଳ୍ସି ସମସ୍ତ ରଖି ଦେଲେ ପାଣିରେ ଥିବା ମଇଳା ଅଂଶ ବସିଯାଏ (ତଳକୁ ବସିଯାଏ) । ବ୍ରଣଟି ବସିଗଲା, ପାଚିଲା ନାହିଁ ( ମିଶିଗଲା ) । ସକଳ ଦେହେ ନାରାୟଣ, ବସନ୍ତି ଅନାଦି କାରଣ । ତାଙ୍କ ଗାଁରେ ଏବେ ଗୋଟିଏ ସ୍କୁଲ ବସିଛି ( ସ୍ଥାପିତ ହେବା ) । ସର୍ଦ୍ଦି ହେବାରୁ ମଧୁର ତଣ୍ଟି ବସିଛି (କଣ୍ଠସ୍ୱର ବିକୃତ ହେବା) । ପୁଅର ଆସିବାକୁ ମା ଗୃହେଁ ବସିଛନ୍ତି । ମିଠାଇ ପାଇଁ ଛୁଆଟି ଜିଦ୍‌ଧରି ବସିଛି । ତାଙ୍କ ଗାଁରେ ସପ୍ତା ବସିଛି (ସାତଦିନ ବ୍ୟାପି ଅନବରତ ଭାଗବତ ପାଠ) । ସବୁବେଳେ ବସି ରହିଲେ ସଂସାର ଚଳେ ନାହିଁ ।

**କଣା**— ତାକୁ ଅନ୍ଧାଇକଣା ହୋଇଛି । ଚାଉଳ ଦର ଚଢ଼ାଇ ନ ଦେବାପାଇଁ ସେ ନାନା କଟକଣା ଜାରି କରିଛନ୍ତି । ପଇସା ଗଳାଇବାପାଇଁ ସେ ବାକ୍ସରେ କଣାଟିଏ କରିଛନ୍ତି । କଣାକୁଜା ଲୋକେ ସାଧାରଣତଃ ଏକବୁଙ୍ଗା ହୁଅନ୍ତି ।

**ଗଣ୍ଡା**— ଗଣ୍ଡାଚମ ଔଷଧରେ ଲାଗେ । ଗାଁ ଗଣ୍ଡାର ଅବସ୍ଥା ଆଜକାଲି ଭଲ ନୁହେଁ । ନଡ଼ିଆ ଗଣ୍ଡା ଟଙ୍କାଏ ହୋଇଛି । ତା ଘରେ ଗଣ୍ଡା କଡ଼ା ନାସ୍ତି ।

**ଗଣ୍ଡ**— ଏହି ଗଣ୍ଡରେ ଏ ବର୍ଷ ପାଣି ରହିଲା ନାହିଁ । ସେହି ସ୍ତ୍ରୀ ଲୋକର ଗଣ୍ଡଦେଶରେ (ଗାଲ) କୁଣ୍ଡଳ ଶୋଭା ପାଉଥିଲା । ସେହି ଗଣ୍ଡ (ମୂର୍ଖ)କୁ କିଛି ପଚାରିବା ଅନୁଚିତ । ଦସ୍ୟୁ ଗଣ୍ଡ (ଆଦିବାସୀ ଜାତି) ଆମ ଘରକୁ ଆସିଲା ।

**କାଣ୍ଡ**— ଧନୁର କାଣ୍ଡ (ଶର) ଶକ୍ତ ହେବା ଉଚିତ । ଗଛର କାଣ୍ଡ ( ଗଣ୍ଡି ) ସାଧାରଣତଃ ମାଟି ଉପରେ ଥାଏ । ରାମାୟଣର ଲଙ୍କାକାଣ୍ଡ (ଖଣ୍ଡ) ସେ ଘରେ ପଢ଼ିଲେ । ମଧ୍ୟ ରାତିରେ ଗୋଟିଏ ଅଗ୍ନିକାଣ୍ଡ ଘଟିଲା । ପାଞ୍ଚଦିନ ମଧ୍ୟରେ ସେ ନାନାକାଣ୍ଡ (ଘଟଣା) ଭିଆଇଲେ । କାଣ୍ଡଶର ( ଏକପ୍ରକାର ତୃଣ ) ନଈ କୂଳରେ ହୋଇଥାଏ ।

**ଅମଳ**— ଆକବରଙ୍କ ଅମଳରେ (ରାଜତ୍ଵକାଳ) ଲୋକମାନେ ସୁଖରେ ଥିଲେ । ନାନା ଚେଷ୍ଟା କରି ମଧ୍ୟ ସେ ତାଙ୍କ ଅଫିମ ଅମଳ ଛାଡ଼ି ପାରିଲେ ନାହିଁ । ଏବର୍ଷ ଧାନ ଅମଳ କରିବା ସମୟରେ ଖୁବ୍ ବର୍ଷା ହେଲା ।

**କମାଇବା**— ଗାଈଟି ଫଳ ଯିବାରୁ ଦୁଧ କମାଇ ଦେଲା । (ଊଣା କରିବା) । ସେ ତା ଜୀବନରେ ବହୁତ ଟଙ୍କା କମାଇଥିଲା; (ରୋଜଗାର କରିଥିଲେ) ତା ଅନ୍ତେ ସବୁ ଖଣ୍ଡ ଖାଇଗଲେ ।

ମେହେନ୍ତରାଣୀ ପ୍ରତିଦିନ ପାଇଖାନା କମାଏ (ସଫାକରିବା) । ବାରିକିଆଣୀ ନଖ କମାଇଲା ।

**କଷିବା** ମଧ୍ୟ ସହଜରେ ଅଙ୍କଗୁଡ଼ିକ କଷିଲେ । ପଢ଼ିବାକୁ ଢିଅରେ କଷିବା ଦରକାର । ବଳଦ ପିଠିରେ ପଲାଣ କଷାଯିବ ।

**ଗୁଣ୍ଡା**— ସାଧୁଲୋକ ଗୁଣ୍ଡାଙ୍କୁ ( ଦୁଷ୍ଟଲୋକ ) ଭୟ କରନ୍ତି । ଗୋବରକୁ ନେଇ ସେ ଗୁଣ୍ଡା ପକାଇଲା । ଲଙ୍କାଗୁଣ୍ଡା ସେ ତରକାରିରେ ପକାଇଲେ (ଚୂନା) । ହାତଗୁଣ୍ଡା ପାଟିକୁ ନ ନେଉଣୁ ସେ ମରିଗଲା ।

**ଛନ୍ଦ**—ସେ ଲୋକର ଛନ୍ଦରେ (କପଟ) ଦେବତା ମଧ୍ୟ ପଶି ପାରିବେ ନାହିଁ । ପଦ୍ୟଟିର ଛନ୍ଦପ୍ରତି (ରାଗିଣୀ) ଦୃଷ୍ଟିଦେଇ ପଢ଼ିବା ଉଚିତ । ଛନ୍ଦ ଦେଇ ସେ ଗାଈ ଦୁହିଁଲେ ।

**ଛିଡ଼ିବା**— ଲୁଗା ଝଣ୍ଡିକ ଛିଡ଼ିଗଲା ( ଚିରିଗଲା ) । ସୁଦୀର୍ଘ ଆଲୋଚନା ପରେ ଅଡୁଆ ( ନିଷ୍ପତ୍ତି ) ଛିଡ଼ିଗଲା । ଦୁଧ ଛିଡ଼ିଗଲା (ଛେନା ହୋଇଯିବା) । ବହୁଦିନର କାରବାର ପରେ ଶୀଳଟା ଛିଡ଼ିଗଲା ।

**ଟେକିବା**— ସେ ତଳେ ପଡ଼ିଥିବା ଲୁଗାଟିକୁ ଟେକିଦେଲା ( ଉପରକୁ ଉଠାଇବା ) । ପ୍ରଧାନ ଶିକ୍ଷକ ସଭାରେ ସେହି ପିଲାଟିର ସଦ୍‌ଗୁଣ କହି ତାକୁ ଖୁବ୍ ଟେକିଲେ ( ପ୍ରଶଂସା କଲେ ) । ଟେକା ଟେକିରେ ତାକୁ କେହି ପାରିବେ ନାହିଁ ( ଖୋସାମତି ) । କେଉଁଠାରେ ଟେକିବ ବା କେଉଁଠାରେ ପଡ଼ିବ ଏହା ନ ଜାଣିଲେ ଗୀତ ଗାଇ ହେବ ନାହିଁ (ଉଚ୍ଚସ୍ୱରରେ ଗାଇବା) । ସେ ଲାଜରେ ମୁଣ୍ଡ ଟେକି ( ସିଧା କରିବା ) ପାରୁନାହିଁ । ସେ ମୋ ମୁଣ୍ଡ ଉପରକୁ ଛତା ଟେକି

ହେଲେ ( ଧରିବା ) । ତାର ବିମାତା ତାଙ୍କ ମୃତ୍ୟୁ ପାଇଁ
ଠାକୁରଙ୍କୁ ପ୍ରତିଦିନ ପାଣି ଟେକୁଛି (ପାଣି ଅଞ୍ଜଳି ଦେବା) ।

ତୋଳିବା—ହାଟ ବାରଦିନ ସେ ପାଞ୍ଚଏ ବାଇଗଣ ତୋଳିଲେ । ତୋଳାଏ ଅଫିମର ଦାମ ବାର ଟଙ୍କା (ଓଜନ ପରିମାଣ ) । ନିକିତିରେ ସେ ସୁନା ହାରଟିକୁ ତୋଳିଲେ । ସେ ତାଙ୍କ ପୁଅପାଇଁ ପୁରେ ଘର ତୋଳିଲେ । ହାଟଦାଣ୍ଡିଆ ହାଟରୁ ତୋଳା ଆଦାୟ କଲେ । ଦେଉଳ ତୋଳା କାମ ସରିନାହିଁ । ପଦ୍ମତୋଳା ଶୁଣି ସାପଟି ଗାତରୁ ବାହାରି ଆସିଲା ।

ଥର— ସେ ପ୍ରତିଦିନ ତିନିଥର (ବାର) ସ୍ନାନ କରନ୍ତି । ସେ ଥରକୁଥର (ପୁନଃପୁନଃ) ସେହି ଭୁଲ କରୁଛି । ଥରେ ( ଏକ ସମୟରେ) ତାଙ୍କ ଗୋଡ଼ ମକଚି ଯାଇଥିଲା । ତାଙ୍କୁ ଥରେ ଥରେ (ବେଳେ ବେଳେ) ଜ୍ୱର ହେଉଛି । ବିଲେଇ ଥରକେ (ଏକବାରରେ) ତିନୋଟି ଛୁଆ ଜନ୍ମ କରେ । ସେ ଭୟରେ ଥରହର ହେଲା (କମ୍ପ) । ସେ ଶୀତରେ ଥରୁଛି (କମ୍ପୁଛି) । ତାଙ୍କୁ ଥରଥରି ବାତ ଧରିଛି ।

ଦେଖିବା—ପୁରୀରେ ସେ ଜଗନ୍ନାଥ ମନ୍ଦିର ଦେଖିଲେ । ବିମାତାଙ୍କ ପାଲରେ ପଡ଼ି ସେ ତାଙ୍କ ପିଲାଗୁଡ଼ିକୁ ଦେଖି ପାରିଲେ (ସ୍ନେହ କରିବା) ନାହିଁ । ଶାଗ ଖିଆକୁ ପେଜଖିଆ ଦେଖିପାରେ ନାହିଁ । କାର୍ଯ୍ୟ ନିଯୁକ୍ତି ପାଇଁ ମୁଁ ତାଙ୍କୁ ଅନୁରୋଧ କଲି, ସେ ମୋ କଥା ଦେଖିବେ ବୋଲି କହିଲେ (ବିବେଚନା କରି ) । ମୁଁ ପାଗର ଅବସ୍ଥାକୁ ଦେଖୁଛି ଯେ ଏ ବର୍ଷ ଭଲ ଧାନ ହେବନାହିଁ ( ଉପଲବ୍ଧି କରିବା) । ବହିଟି କେଉଁଠି ରହିଲା ମୁଁ ଦେଖିବି (ଖୋଜିବା) । ଜ୍ୟୋତିଷୀ ହାତ ଦେଖିଲେ ( ରେଖା ଦେଖି ଭବିଷ୍ୟତ କଥା

କହିବା ) । ବଡ଼ ଡାକ୍ତର ଏହି ରୋଗୀଙ୍କ କଥା (ଚିକିତ୍ସା) ଦେଖନ୍ତି । ସ୍କୁଲ ଇନ୍‌ସ୍‌ପେକ୍ଟର ଆଜ ସ୍କୁଲ ଦେଖିବେ (ପରୀକ୍ଷା କରିବା) । ସେ ଖାଲି ଦେଖା ସୁନ୍ଦର, କାମରେ କିଛି ନୁହନ୍ତି । ମୁଁ ତାଙ୍କ ପିଣ୍ଡାରେ ଘଣ୍ଟାଏ କାଳ ଅପେକ୍ଷା କଲି; କିନ୍ତୁ ସେ ମୋତେ ଦେଖା ଦେଲେ ନାହିଁ ।

ନା— ନାଁ, ମୁଁ ଘରକୁ ଯିବିନାହିଁ (ଅସ୍ୱୀକାର ଅର୍ଥରେ) । ତୁ ବର୍ତ୍ତମାନ ଯାଉଛୁ ନାଁ (ପ୍ରଶ୍ନ ସ୍ଥଳରେ) ? ଠାକୁର ଘରେ କିଏ ନାଁ ମୁଁ କଦଳୀ ଖାଇ ନାହିଁ (ପ୍ରଶ୍ନ ଉତ୍ତର ମଝିରେ ସଂଯୋଜକ) । ଆଜି ଏହି ଗାଁରେ ରହିବା ନାହିଁ; କାହିଁକି ନାଁ ଏଠାରେ ବାଘ ମାଡୁଛି (କାରଣ) । ଏହି କାମ କର ନାଁ (ନିଷେଧ) । ପଢ଼ୁଛୁ, ନାଁ ଦେଖିବୁ ମୁଁ କଣ କରିବି (ଧମକ) । ତୁମ ବୁଢ଼ା ବଞ୍ଚିଛନ୍ତି ନାଁ (ସନ୍ଦେହ) ? ଦେଉଳଟି ତୋଳି ସେ ଖୁବ୍ ନାଁ କଲେ (କୀର୍ତ୍ତି ଅର୍ଜିଲେ) । ସେ ଅନେକ ଦିନ ପର୍ଯ୍ୟନ୍ତ ନ ଆସିବାରୁ ହାଜରିରୁ ତାଙ୍କ ନାଁ କାଟିଦେଲେ । ସକାଳେ ତାଙ୍କ ନାଁ ଧରିଲେ ପାପ (ନାମ ଉଚ୍ଚାରଣ କରିବା) । ପରୀକ୍ଷା ଆସିଗଲା, ସେ ପାଠପଢ଼ା ନାଁ ଧରୁନାହିଁ (ମନଯୋଗ ଦେବା) । ସେ ଏହି କୁକର୍ମରେ ବାପ ମାଙ୍କ ନାଁ ପକାଇଲା (କଳଙ୍କ ଲଗାଇବା) । ସେ ମୋ ନାଁରେ (ବିରୁଦ୍ଧରେ) ନାଲିସ କରିଛି ।

ଧରି— ଦୁଇ କୋଶ ଧରି ବର୍ଷା ହେଲା (ଦେଶ ବ୍ୟାପ୍ତି ଅର୍ଥରେ) । ସେ ଦୁଇଘଣ୍ଟା ଧରି ଅନର୍ଗଳ ବକ୍ତୃତା ଦେଲେ (ସମୟ ଅର୍ଥରେ ବ୍ୟାପ୍ତି) । ସେ ପାଞ୍ଚଜଣ ଅନୁଚର ଧରି (ସଙ୍ଗରେ ନେଇ) କଟକ ଗଲେ । ସେ ଚୋରକୁ ଧରି ଦେବାରୁ ପୁରସ୍କାର

ପାଇଲେ । ମଧୁ ଏଥିପାଇଁ ଦାୟୀ ବୋଲି ସେ ଧରିନେଲେ (ଅନୁମାନ କରିବା) ।

ଧରା—ସେ ଗନ୍ଧରେ ଧରାକୁ ସରାଜ୍ଞାନ କଲେ (ପୃଥିବୀ) । ସେ ହାଣ୍ଡି ଧରାପାଇଁ ଜଙ୍ଗଲ ଗଲେ । ସେ ମୋ ଠଙ୍କା ଧାରିଥିଲେ । ଆଦାୟ ବେଳକୁ ଧରାଛୁଆଁ ଦେଉ ନାହାନ୍ତି (ଦେଖା ସାକ୍ଷାତ) । ବରଧରା ଫେରି ଆସିଲେ କନ୍ୟାର ମଙ୍ଗଳ କାମ କରାଯିବ । ଦାଗୀ ଏକଦିନ ପରେ ଆପେ ଧରା ପଡ଼ିଲା । ଖୁବ୍ ଧରା ଧରି କରି ସେ ଗୃକଣ୍ଟି ଖଣ୍ଡିଏ ପାଇଲେ (ଖୋସାମତ) । ସେ ଲୁଚି ବୁଲୁଥିଲେ, ଏତେଦିନ ପରେ ଧରା ପଡ଼ିଲେ (ହାବୁଡ଼େ ପଡ଼ିବା) । ତାଙ୍କ ବିବାହ ପାଇଁ ଲଗ୍ନ ଧରାଗଲା (ସ୍ଥିର କରିବା) । ଦେଶଦ୍ରୋହୀ ଧରାଗଲା (ଗିରଫ କରିବା) । ଖୁର ଧରା ହେଲା (ଶାଣ ଦିଆଯିବା) । ଧରା ହୋଇଥିବା ଅଣ୍ଡିରା ଗୋରୁକୁ ବଳଦ କହନ୍ତି (ଖାସି କରାଯାଇ ଥିବା) ।

ପାନ—ସେ ପାନ ଖାଏ (ଖିଲିପାନ) । ପାନ (ପାନପତ୍ର) ରସ ଉଷ୍ମ । କବିରାଜଙ୍କଠାରୁ ଦୁଇପାନ ଔଷଧ ସେ ନେଲେ । ଜଳ ପାନ କରି ସେ ଘରକୁ ଗଲେ (ପିଇବା) ।

ବିନ୍ଧିବା—ଆଜକାଲି ରାତିରେ ମୋ ମୁଣ୍ଡ ବିନ୍ଧୁଛି (ବ୍ୟଥା ହେବା) । ବଢ଼ାଇ କାଠ ବିନ୍ଧିଲା (କଣା କରିବା) । ମୁଁ ସାବଧାନ ହୋଇ ନଥିଲେ ବଳଦ ମୋତେ ବିନ୍ଧିଥାନ୍ତା (ଶିଙ୍ଗରେ ଭୂଷିଥାନ୍ତା) । ସେ ଶର ବିନ୍ଧିଲା, କିନ୍ତୁ କିଛି ଫଳ ହେଲା ନାହିଁ (ଶର ମାରିବା) ।

ଧରିବା '—ପୋଲିସ ଚୋରକୁ ଧରିଲା (ସନ୍ଧାନ କରିବା) । ଏହି ବୋତଲରେ ସବୁ ତେଲ ଧରିବ ନାହିଁ (ସମ୍ଭାଇବା) । ଏହି

ଗଛରେ ଫଳ ଧରିଲାଣି (ଜନ୍ମିବା) । ନୂଆ ପାଣିରେ ଗାଧୋଇବାରୁ ମୋ ଆଖି ଧରିଛି (ଆଖିରେ ରୋଗ ହେବା) । କୋଳରେ କାଖରେ ଧରିବାକୁ ତାର କେହି ନାହିଁ । ବାସୁକି ପୃଥିବୀକୁ ଧରିଛି (ଧାରଣ କରିବା) । ସେ ତା ମୁଣ୍ଡ ଉପରକୁ ଛତା ଧରିଛି (ଉପରକୁ ଟେକିବା) । ସେ ବାଲୁଙ୍କୁ ଧରିଲେ (ଖାସ୍ କଲେ) । କେଉଟ ମାଛ ଧରିଲା (ମାଛକୁ ପାଣିରୁ ବାହାରକୁ ଆଣିବା) । ବଡ଼ ଜ୍ୱରରୁ ସେ ବଳ ଧରିଛି (ବଳ କରିବା) । ତା ଅଣ୍ଟା ମୁଣ୍ଡ ଧରିଛି (ବଥାଇବା) । ସ୍ୱକାନ୍ତ ତା ନାମ ଧରି ନାହିଁ (ଉଚ୍ଚାରଣ କରିବା) । ଏହି ଔଷଧ ଧରିଲା ନାହିଁ (କାମ୍ କରିବା) । ସେ ଭଗବାନଙ୍କୁ ଧରିଛି, ସେ ଯାହା କରିବେ (ଆଶ୍ରୟ ନେବା) । ସେ ମୋର ସବୁ କଥାକୁ ଧରୁଛି, ତା ପାଖରେ ଚଳିହେବ ନାହିଁ (ସମାଲୋଚନା କରିବା) । ତାକୁ ନିଶା ଧରିଲାଣି ( ଆକ୍ରାନ୍ତ ହେବା) । ଓଦା କାଠ ଯୋଗୁଁ ନିଆଁ ଧରୁ ନାହିଁ (ନିଆଁ ଲାଗିବା) । ସେ ମଞ୍ଜି ଧରିଲେ (ସଂଗ୍ରହ କରିବା) । ସେ କଲମ ଧରି ଷଷ୍ଠରେ ପଢ଼ିଲେ (କଲମରେ କଣିବା) । ତାଙ୍କ ପୁଅର ବିବାହ ପାଇଁ ଲଗ୍ନ ଧରିଲେ (ଦିନ ସ୍ଥିର କରିବା ) । ମୋର ଡେରି ହେବାରୁ ମୁଁ ଗାଡ଼ି ଧରି ପାରିଲି ନାହିଁ । ମଧୁ ତୁମ ହାତ ଗୋଡ଼ ଧରିଲା, ତଥାପି ତୁମ ହୃଦୟ ତରଳିଲା ନାହିଁ (ଅନୁନୟ କରିବା) । ଚଉକିରେ ଉଇ ଧରିଲାଣି (ଲାଗିବା) । ପାଣି ଧରି ରଖିବା ପାଇଁ ସେ ବନ୍ଧଟିଏ ପକାଇଲା । ପରୀକ୍ଷାଦ୍ୱାରା ପିଲାଙ୍କର ପ୍ରକୃତ ଜ୍ଞାନ ଧରି ହୁଏ (ଜାଣିବା) । ମୁଁ ତାଙ୍କ ଯୁକ୍ତି ଧରିପାରୁ ନାହିଁ (ବୁଝିବା) । ସେ ସିନା ଖେଳୁଥିଲା, ଏବେ ତାର ମନ

ଘର ଧରିଲା (ଚିନ୍ତାକୁଳ ହେବା) । ପିଲାଟି ଆଜି ଦିନସାରା ଖେଳନା ପାଇଁ ଅଳଟ ଧରିଛି (ଜିଦ୍ କରିବା) ।

**ପଇସା**—ସେ ଭିକାରୀକୁ ପଇସାଟିଏ ଦେଲା (ଅଣାକର ଷୋଳ ଭାଗରୁ ଭାଗେ) । ମୋ ହାତରେ ପଇସା ନାହିଁ (ଧନ) । ଯୁଦ୍ଧ ସମୟରେ ସେ ଅନେକ ପଇସା କଲା (ଧନ ସଞ୍ଚୟ) । ଜୁଆ ଖେଳି ସେ ଅନେକ ମଲମା ମାଟିକି ପକାଇ ଦେଲା (ଅପବ୍ୟୟ କରିବା) ।

**ପକାଇବା**—ସେ ଅଳିଆ ଖାତରେ ପକାଇଲା (ଫିଙ୍ଗିବା) । ଗୋଟିଏ ଜଣ ଲୋକ ଦିନ ଭିତରେ ଗଛକୁ ପକାଇଲେ (ତଳେ ପକାଇବା) । ସେ ଟେଟଲେ ଅଫିମ ପକାଇଛି (ଖାଇଛି) । ସେ ଅନେକ ପଇସା ପକେଟରେ ପକାଇଲା (ଆତ୍ମସାତ୍ କରିବା) । ଏପରି ବିଷୟ ସଭାରେ ପକାଇବା ଉଚିତ୍ (କଥା ଉଠାଇବା) । ସେ ଠାକୁରଙ୍କ ପାଖରେ ଚଅଁର ପକାଉଛି (ବିଞ୍ଚିବା) । ସେ ବନ୍ଧ ହୁଡ଼ାରେ କଦଳୀ ପକାଇଲେ (ପୋତିବା) । ଭଦ୍ର-ଲୋକଙ୍କ ପାଇଁ ପିଣ୍ଡାରେ ମସିଣା ପକାଅ (ବିଛାଇବା) । ଶୀତଦିନ ହେଉଥିରୁ ନଅଟା ବେଳକୁ ସମସ୍ତେ ଦ୍ୱାର ପକାଇ ଦେଉଛନ୍ତି (ବନ୍ଦ କରିବା) । ମଦନ ମୋହନଙ୍କ ପାଖରେ ସେ ତାଙ୍କ ପୁଅ ବାଳ ପକାଇବେ (ଖୁଡ଼ିବା) । କଦଳୀ ଗଛ ବଡ଼ କାନ୍ଧିଟିଏ ପକାଇଛି (ଫଳିବା) । ସେ ପକାଇଲା ଛେପକୁ ହାତ ପାତୁଛି ।

**ପାଗ**—ପାଗ ବାନ୍ଧି ବାନ୍ଧି କଚେରୀ ବରଖାସ୍ତ (ପଗଡ଼ି) । ଏ ପାଗରେ (ମେଘର ଅବସ୍ଥା) କେହି ଘରୁ ବାହାରିବେ ନାହିଁ । ଉଖୁଡ଼ା ପାଇଁ ସେ ଗୁଡ଼ ପାଗ ଧରିଛି (ରସ) । ଚାଉଳଡ଼ା ହାଣ୍ଡି (ଅଶୌଚ ଘରେ ହାଣ୍ଡିଶାଳକୁ କଡ଼ା ଯାଇଥିବା) ।

ମାଟି ପାଗିଲେ ହଳ ଧର୍ବ ହେବ (ବୃକ୍ଷ ପାଇଁ ଉପଯୁକ୍ତ ହେବା ) ।

ପୁର—ମଣ୍ଡା ପିଠାରେ ପୁର ଦିଆଯିବ । ସେ ହରିପୁରରେ (ଗ୍ରାମ) ବାସ କରନ୍ତି । ପୁରବାସୀ (ନଗର) ଜନ ନିଦ୍ରାଗତ ହେଲେ । ସେ ପୁର ପୁର ପକାଇ (ଥର)ପିଠଉ ବାଟିଲେ ।

ପୁରୁଷ—ସେ ଜଣେ ସୁପୁରୁଷ (ମନୁଷ୍ୟ) । ଦୁଇ ପୁରୁଷ ହେଲ ଆମ୍ଭେମାନେ ଏଠାରେ ଅଛୁ (ଜଣେ ଲୋକର ଜୀବନକାଳ) । ଏ କୂଅରେ କି ପୁରୁଷ ପାଣି (ମନୁଷ୍ୟର ଉଚ୍ଚତା) । ପୁରୁଷ-ମାନେ କଠିନ ପରିଶ୍ରମ କରିପାରନ୍ତି । ଗୋପବନ୍ଧୁ ଜଣେ ପୁରୁଷୋତ୍ତମ ଥିଲେ (ଶ୍ରେଷ୍ଠ ଲୋକ) । ସେ ପୁରୁଷୋତ୍ତମ (ଶ୍ରୀକ୍ଷେତ୍ର)ରେ ବାସ କଲେ । ସେ ପୁରୁଷୋତ୍ତମ (ବିଷ୍ଣୁ)ଙ୍କୁ ନମସ୍କାର କଲେ ।

ପ୍ରସାଦ—ପୂଜା ପରେ ସେ ପ୍ରସାଦ (ଭୋଗ) ସେବନ ବ୍ୟବସ୍ଥା କରିଥିଲେ । ହାକିମଙ୍କ ପ୍ରସାଦ ଲାଭ କରି ସେ ଆଜି ବଡ଼ଲୋକ (ଅନୁଗ୍ରହ) । ସେ ଅନେକ ଭଲ କାମ କରିଥିବାରୁ ଆତ୍ମପ୍ରସାଦ (ମାନସିକ ଶାନ୍ତି) ଲାଭ କଲେ ।

ଫଟା—ଫଟା ହାଣ୍ଡିରେ (ଫାଟି ଯାଇଥିବା) ରାନ୍ଧି ହେବ ନାହିଁ । ତୋ ପରି ଫଟା ମୁଁ ଆଉ ଦେଖି ନାହିଁ (ଯେ ଗୋଟିଏ କଥାକୁ ବାରମ୍ବାର ପଚାରେ ) । ବାଉଁଶଟି ଶୁଖିଯାଇ ଥିବାରୁ ଫଟାଇ ହେଉ ନାହିଁ (ଚିରିବା) । ତାଙ୍କ ଫଟା (ମନ୍ଦ) କପାଳରେ ଆଉ କି ସୁଖ । ସେ ଫଟା ପାହୁଲାଟିଏ (ଅତି ସାମାନ୍ୟ ଧନ) ବି ଦେଲା ନାହିଁ । କେତେ ଫଟାଇ ହେଉଛୁ ?

ବର୍ଣ୍ଣ—ସେ କେଉଁ ବର୍ଣ୍ଣରେ (ଜାତି) ଜଣ ? ସେ ସ୍ୱରବର୍ଣ୍ଣ (ଅକ୍ଷର) ଶେଷ କଲଣି । ଅପରାଜିତା ଫୁଲର ବର୍ଣ୍ଣ (ରଙ୍ଗ) କଣ ? ସେ ବର୍ଣ୍ଣବୋଧ ପଢ଼ିଲେ ।

ବସାଇବା—ସେ ଗୁରୁଦେବଙ୍କ ପଦ ଧୁଆଇ ଆସନରେ ବସାଇଲେ (ବସିବାକୁ ଦେବା) । ଆମ ମୁଖ୍ୟ ମନ୍ତ୍ରୀ ଗୋଟିଏ ନୂଆ ଗାଁ ବସାଇଲେ (ସ୍ଥାପନ କରିବା) । ସେ ମୁଦିରେ ପଥର ବସାଇଲେ (ରତ୍ନ ଖଚିତ କରିବା) । ସରକାର ଶିକ୍ଷାର ପ୍ରସାର ପାଇଁ କର ବସାଇଲେ (ଧାର୍ଯ୍ୟ କରିବା) ।

ବସା—ସେ ବସାଦହି ଖାଇଲେ ( ଘନୀଭୂତ ଦଧି ) । ସେ ପାହାରଟିଏ ଦେଇ ମୁଣ୍ଡରୁ ବସା ( ବସ, ଚର୍ବି ) ବାହାର କରି ଦେଲେ । ଘରଚଟିଆ ଚାଳରେ ବସାକରିଛି (ନୀଡ଼) । କଟକରେ ବସା (ଅସ୍ଥାୟୀ ଘର) ମିଳୁନାହିଁ ।

ବହି—ସେ ବହି (ପୁସ୍ତକ) ଖଣ୍ଡିକ ପଢ଼ିଲେ । ଧନସାର ଘର ବହି (ବହନକରି) ସେ ଟଙ୍କାଏ କମାନ୍ତି । ଆମ ଗାଁ ପାଖରେ ନଈ ବହିଯାଏ ( ପ୍ରବାହିତ ହେବା ) । ଏବେ ଏଣିକି ଦକ୍ଷିଣା ପବନ ବହିଲଣି । ସେ ମନରେ ରାଗ ବହିଛି ( ଧାରଣ କରିବା ) ।

ବୋଲ—ଏଇଟା ପଶ୍ଚିମା ବୋଲ (ଭାଷା); ତେଣୁ ବୁଝି ହେଉ-ନାହିଁ । ସେ ପ୍ରତିଦିନ ଭାଗବତ ବୋଲନ୍ତି (ଗାଇବା) । ସେ ବୋଲକରା (ଆଜ୍ଞାଧୀନ) ପିଲା । ସେ ପିତାମାତାଙ୍କ ବୋଲ (କଥା) ମାନିଲେ ନାହିଁ । ଏବେ ତୁମେ ବୋଲ (କୁହ) । ସେ ବାବାଜୀଙ୍କ ପାଖକୁ ବୋଲି (ସୀମା ପର୍ଯ୍ୟନ୍ତ) ଚାଲିଗଲେ । ସେ ହାକିମଙ୍କ ପୁଅ ବୋଲି (ହେଲେ ସୁଦ୍ଧା) କଣ ସମସ୍ତଙ୍କୁ ମାରିବ ? ସେ ମୋତେ କହିଲେ ବୋଲି (କାରଣରୁ) ମୁଁ

ତାଙ୍କ ଘରକୁ ଗଲି । ମଧୁ ବୋଲି ଏତେ କାମ କରୁଛି; ଆଉ କେହି ହୋଇଥିଲେ ପାରନ୍ତେ ନାହିଁ (କେବଳ) । ଖାଇବାକୁ ମିଳିବ ବୋଲି (ଉଦ୍ଦେଶ୍ୟରେ) ସେ ଏଠାକୁ ଆସିଛି । ଦଶରଥ ବୋଲି ଜଣେ ରାଜା ଥିଲେ (ନାମରେ) । ସେ ଦାତା ବୋଲି (ଏହି ମର୍ମରେ) ଚାରିଆଡ଼େ ନାଗରା ବାଜୁଛି । ତୁଳବୋଲ ଏକ ପ୍ରାଚୀନ ଭାଷା ।

**ଭାବ**—ମୁଁ ତାଙ୍କ କଥାର ଭାବ (ଅଭିପ୍ରାୟ) ବୁଝି ପାରିଲି ନାହିଁ । ଶିଳ୍ପକାର ଦୃଶ୍ୟ ଦର୍ଶନରେ ଭାବାନ୍ତର ଜାତ ହୁଏ (ମନର-ଅବସ୍ଥା) । ବୈଷ୍ଣବ ଭାବାବିଷ୍ଟ (ଅନୁରାଗ) ହେଲେ । ସେ ଏହି ଅନୁଚ୍ଛେଦର ଭାବ (ତାତ୍ପର୍ଯ୍ୟ) ଗ୍ରହଣ କଲେ । ଏହି ଶ୍ଳୋକର ଭାବାର୍ଥ ସେ ସରଳ ଭାଷାରେ (ପ୍ରକୃତ ଅର୍ଥ) ଲେଖିଲେ । ତୁମେ ଏ ବିଷୟଟି ମନ ମଧ୍ୟରେ ଭାବ (ଚିନ୍ତା କରିବା) ।

**ମରିବା**—ତାଙ୍କ ବଡ଼ ଭାଇ ଆଜି ମଲେ (ମୃତହେବା) । ଟିରିକାଷ୍ଟରୁ ପାଣି ମଲାଣି (ଶୁଖିଯିବା) । ମଧୁ ସେଠାକୁ ଦଉଡ଼ି ଦଉଡ଼ି ମରୁଛି (କଷ୍ଟ ଭୋଗିବା) । ସେ ପାହି ନ ହୁଏଁବାରୁ ମଲା (ପରାସ୍ତ ହେବା) । ମଲା (ଶୁଷ୍କ) ଗଛରେ ପାଣି ଦେବା ଅନୁଚିତ । ଦିନବେଳେ ଦେଖାଯିବା କିରଣହୀନ ଚନ୍ଦ୍ରକୁ ମଲାଜହ୍ନ କହନ୍ତି । ମଲା ନିଆଁରେ ଦୁଧ ବସାଇଛି । ତା ହାତରେ ଅନେକ ମଲା ଭାତ ବାହାରିଲା । ଗୋରୁକୁ ମାଇଲେ ମଲା, ଗୋରୁ ମାଇଲେ ମଲି ।

**ମାଡ଼ିବା**—ସେ ଗୋବର ମାଡ଼ୁଛି । ଗୋଡ଼ରେ ମାଡ଼ିବାଦ୍ୱାରା (ଚାପିବା) ତୁଳା ବସିଗଲା । ତାଙ୍କ ସ୍କୁଲରେ କଣାରୁ ମାଡ଼ୁଛି (ଲଙ୍ଘାଇବା) । ସେ ଆମ ଦୁଆର ମାଡ଼ୁନାହିଁ (ସୀମା ସ୍ପର୍ଶ କରିବା) । ତା ମୁହଁରେ ଛଉ ମାଡ଼ିଲା (ବ୍ୟାପିବା) । ତାକୁ ପ୍ରସା

ମାଡ଼ୁଛି (ଅନୁଭବ କରିବା) । ତାକୁ ହସ ମାଡ଼ୁଛି । ବେଶ୍ ଆ ଲୋକକୁ ନିଜ ମାଡ଼େ ନାହିଁ । ଏକୁଟିଆ ଜଙ୍ଗଲରେ ଯାଉଥିବାବେଳେ ତାକୁ ଡର ମାଡ଼ିଲା । ତାକୁ ଆଜ ନିଦ ମାଡ଼ିଲା । ସେ ଯୋଚା ମାଡ଼ୁଛି (ପିନ୍ଧିବା) ।

**ମାନ**—ସେ ତାପମାନ (ମାପିବା) ଯନ୍ତ୍ରଟିଏ କିଣିଲା । ସେଥିରୁ ବଢ଼େଇର କାମର ମାନ ଉଚ୍ଚ ହେବା ଉଚିତ୍ । ତାର ନିଜ ମାନ ମର୍ଯ୍ୟାଦା ପ୍ରତି ଖାତିର (ସମ୍ମାନ) ନାହିଁ । ବୋହୂ ଖାଇବାକୁ ନ ଡାକିବାରୁ ଶାଶୁ ଖାଇବାକୁ ମାନ (ଅଭିମାନ) କରିଛି । ମୂଲିଆ ପୁଅ ମାନ (ଅଭିମାନ) କଲା, ମୂଲ ଟୋକୀକୁ ଦାନ କଲା । ମନ୍ତ୍ରୀଙ୍କୁ ଗୋଟିଏ ମାନପତ୍ର ଦିଆଗଲା । ସେ ମାନଦଣ୍ଡ ମାଧ୍ୟମରେ ନିଜକୁ ପରଖିଲେ (ମାପ) । ମାନଭଞ୍ଜନ ନାଟକ ଅଭିନୀତ ହେଲା । ଓଡ଼ିଶାରେ ଉନ୍ନତ ଧରଣର ମାନମନ୍ଦିର ନାହିଁ । ସେ ଗୋଟିଏ ମାନହାନି ମୋକଦ୍ଦମା ଦାଏର କଲେ । ପିତୃସତ୍ୟ ମାନି (ପାଳନ କରି) ରାମଚନ୍ଦ୍ର ବଣକୁ ଗଲେ । ଏହି ସୁନା ହାରଟି ତା ବେକକୁ ମାନିଲା ନାହିଁ (ସୁନ୍ଦର ଦିଶିବା) । ସେ ତାଙ୍କ ଦୋଷ ମାନିଲେ (ସ୍ୱୀକାର କରିବା) । ମାନିଲେ ଠାକୁର, ନ ମାନିଲେ କୁକୁର (ସମ୍ମାନ କରିବା) । ୧୫ରେ ୧ର ସ୍ଥାନୀୟ ମାନ କେତେ ? ମୋ କଥାମାନ ତାକୁ ଅସୁଖ ଲାଗିଲା (ସମୂହ ଅର୍ଥ) ।

**ମାରିବା**— ସେ ଭୋଜପାଇଁ କୁକୁଡ଼ା ମାରିଲା (ବଧ କରିବା) । ଝିଣ୍ଟିକା ମାରି ବଣି ପୋଡ଼ିବା । ଗାଈର ଦୁଧ ମାରିଦେଲା (ଗୋପନ କରିବା) । ତା ପିଠିରେ ମୁଁ ବିଧାଟିଏ ମାରିଲି (ପ୍ରହାର କରିବା) । ସେ କାନ୍ଥରେ କଣ୍ଟାମାରି ଛବି ଟାଙ୍ଗିଛି (ଭୁଶିକେଇବା) । ବଳରେ ଲଙ୍ଗଳ ନ ମାରିଲେ (ବେଉଷଣ)

ସ୍ପଷ୍ଟ ହେବ ନାହିଁ । ତରକାରିରୁ ପାଣି ମାରିଲା (ଶୁଖାଇ ଦେବା) । ସେ ଚନ୍ଦ୍ର ମୂଳରେ ବସି ଥକା ମାରିଲା । ସେ ତାକୁ ଆଖିପିଞ୍ଚା ମାରିଲା । ସମୁଦ୍ର ଜଳରୁ ଲୁଣ ମାରନ୍ତି । ସେ ମନ ମାରି ବସିଛି (ନୀରସ ହେବା । ସେ ଘନ ଘନ ନିଶ୍ୱାସ ମାରୁଛି । ସେ ଛିଅ ମାରୁଛି । ଫଗୁ ପୁନେଇରେ ପିଚକାରୀ ମାରନ୍ତି । ସେ ତାର ଟଙ୍କାତକ ମାରିନେଲା । ସେ ଗୁମ୍ ମାରି ବସିଛି (ଅଚଳ ହେବା) ।

**ଯୋଗ**— ସେ ପ୍ରତିଦିନ ସକାଳେ ଯୋଗ ଅଭ୍ୟାସ କରନ୍ତି । ସେ ଶୁଭ ଯୋଗ (ସମୟ) ରେ ଘରୁ ବାହାରିଲେ । ସେ ପାଞ୍ଚଗୋଟି ସଂଖ୍ୟାର କମିକ ଯୋଗ (ମିଶାଣ) କଲେ । ଗୋପବନ୍ଧୁ ଜଣେ ଯୋଗଜନ୍ମା ପୁରୁଷ ଥିଲେ । ମଧୁ ବାବୁଘର ପାଇଁ ମାଲ ଯୋଗାଇଲେ (ଆଣି ପହଞ୍ଚାଇବା) । ମଧୁ ବାବୁଙ୍କ ପୁଅକୁ ଏବର୍ଷ ବିବାହ ଯୋଗାଉ ନାହିଁ (ଶୁଭଯୋଗ ଘଟିବା) । ସେ କାର୍ଯ୍ୟରେ ଯୋଗ ଦେଲେ । "ଜାହ୍ନବୀ ଯମୁନା ଯୋଗ ଦେଖେ ଗୋ ସୁନ୍ଦରୀ" (ମିଳନ), ଶୁଭ୍ର ନୀଳ ଜଳ ବିଣେ ଛୁଟିର କପଟ ।

**ଯିବା**—ସେ ଆଜି ଘରକୁ ଯିବେ । ଯିବା ଆପଣା ଆୟତ୍ତ, ଆସିବା ପର ଆୟତ୍ତ । ଏହି ଲୁଗା ବରଷେ ଯିବ (ସ୍ଥାୟୀ ହେବା) । ଧନ ଯିବ କଥା ରହିବ (ଅକ୍ଷତ ହେବା) । ଭାଇ ବୋଲ, ବନ୍ଧୁ ବୋଲ ସମ୍ପଦର ସାଥୀ; ଜୀବ ଯିବାବେଳେ ଏକା ଗୋବିନ୍ଦ ସାରଥି (ମୃତହେବା) । ପଖାଳ ଭାତ ତାଙ୍କ ଦେହରେ ଯାଉନାହିଁ (ସହ୍ୟହେବା) । ଏ ସଂସାରରୁ ଯିବାର (ମରିବା) ବେଳ ତାଙ୍କର ହୋଇଗଲା । ଯେତେ ଚେଷ୍ଟା କଲେ ସୁଦ୍ଧା ରୋଗ ଯିବ ନାହିଁ (ଆରୋଗ୍ୟ ହେବା) । ଅଧର୍ମ

ଲାଭ ବଟେ ବହୁତ, ଯିବାବେଳେ ଯାଏ ମୂଳ ସହିତ- (କ୍ଷୟ ହେବା )।

ରଙ୍ଗ—ସୂର୍ଯ୍ୟ କିରଣରେ ସାତ ଗୋଟି ରଙ୍ଗ ଅଛି। ସେ କାନ୍ଥରେ ରଙ୍ଗ ବୋଳିଦେଲେ। ସେ ରଙ୍ଗାଳୟ (ରଙ୍ଗମଞ୍ଚ) ସ୍ଥାପନ ପାଇଁ ଶହେ ଟଙ୍କା ଦେଲେ ( ଅଭିନୟ )। ଯୋଦ୍ଧା ରଙ୍ଗଭୂମିରେ (ଯୁଦ୍ଧଭୂମି) ଅବତୀର୍ଣ୍ଣ ହେଲେ। ସେ ରଙ୍ଗ ଧୂଳି ଖେଳିଲେ (ଲାଲ)। ଏହି ଗାଈର ଦେହର ରଙ୍ଗ (ବର୍ଣ୍ଣ) କିପରି ? ତାସ ଖେଳରେ ସେ ରଙ୍ଗ ପାଞ୍ଚ ଖଣ୍ଡ ପାଇଛି। ଅଜା ନାତି ସଙ୍ଗରେ ରଙ୍ଗ (ପରିହାସ) କରୁଛନ୍ତି। କଂସାର ରଙ୍ଗ (ଏକପ୍ରକାର ଧାତୁ) ଆଣିଛେ। ସେ ଏଠାକୁ ରଙ୍ଗ (କଳହ) ଦେଖିବାକୁ ଆସିଛି। ତାର ରଙ୍ଗ ଢଙ୍ଗ (ଚରିତ) ଭଲ ନୁହେଁ।

୮. ଲଗାଇବା—ସେ ଦେହରେ ତେଲ ଲଗାଇଲେ (ବୋଳିଲେ)। ସେ ଚାକରକୁ କାମରେ ଲଗାଇଲେ (ନିଯୁକ୍ତ କରିବା)। ସାବିତ୍ରୀ ବେକରେ ହାର ଲଗାଇଲେ (ପିନ୍ଧିବା)। ଅଳିଆରେ ନିଆଁ ଲଗାଇ ଦିଅ। ସନ୍ଧ୍ୟାବେଳେ ଦୀପ ଲଗାଇ (ଜାଳିବା) ଦିଅ। ଗୋରୁକୁ ସେ ଚାବୁକ ଲଗାଇଲା ( ପ୍ରହାର କରିବା )। ତାଙ୍କ ବଗିଚାରେ ସେ ଆମ୍ବ ଗଛ ଲଗାଇଲେ (ରୋପଣ କରିବା)। ମହାଦେବଙ୍କ ପାଖରେ ସେ ଭୋଗ ଲଗାଇଲେ (ଅର୍ପଣ କରିବା)। ନାନା କୁକର୍ମ କରି ସେ ପିତାଙ୍କ ସୁନାମରେ କଳଙ୍କ ଲଗାଇଲେ (ଆରୋପ କରିବା)। ପାନରେ ଚୂନ ଲଗାଇ ଦିଅ (ଲେପନ କରିବା)। ଲୋକଙ୍କୁ ପିଠା ଲଗାଇବ (ପରିବେଷଣ କରିବା)। ଗରମ କଡ଼େଇରେ ହାତ ଲଗାଇଲେ (ସ୍ପର୍ଶ କରିବା) ଫୋଟକା

ହୋଇଯିବ । ନୌକାଟିକୁ କୂଳରେ ଲଗାଇବାରୁ ଲୋକମାନେ ଓହ୍ଲାଇଗଲେ (ଚହଁଆଇବା) । ମନ ଲଗାଇ (ଦେବା) ପାଠ ପଢ଼ । କବାଟ ଲଗାଇ (କିଳ) ଶୋଇବା ଉଚିତ । ସେ ଏହି ବ୍ୟବସାୟରେ ଏକ ହଜାର ଟଙ୍କା ଲଗାଇଲେ (ଲାଭ ଆଶାରେ ଟଙ୍କା ଖଟାଇବା ) । ସେ ତାଙ୍କ ଘରେ କଳିଆ ଲଗାଇ ଦେଲେ (ସୂତ୍ରପାତ କରିବା) । ସେ ନିଜ ଆଖିରେ କଳା ଲଗାଇଛନ୍ତି ।

**ସଜ**—କମାର ସଜ (ଯନ୍ତ୍ରପାତି) ଦଶହରାରେ ପୂଜାରେ ବସେ । ସେ ତାଳସଜ (କୋମଳ ମଞ୍ଜି) ଖାଇଲେ । ପୁରୀକୁ ଯିବା ପାଇଁ ସେ ସଜ (ପ୍ରସ୍ତୁତ ହେବା) ହେଲେଣି । ଏ କାମ କରିବାକୁ ତାକୁ ସଜ (ସୁଯୋଗ) ପଡ଼ୁ ନାହିଁ । ସେ ସଜ (ତଟକା) ମାଂସରେ ପୋକ ପକାଇ ଦେବାର ଲୋକ । ସଜ ଗୋବରରେ ଅଂଶେଇ ପଡ଼ିଲେ ବର୍ଷାର ସୂଚନା ମିଳେ । ଧୋବା ଯେଉଁ ଲୁଗା ନେବା ଦିନ ସଫା କରିଦିଏ ତାକୁ ସଜ ଲୁଗା କହନ୍ତି । ନାଚ ପିଲାମାନେ ସଜ ହେଉଛନ୍ତି (ବେଶ ପିନ୍ଧିବା) ।

**ସନ୍ଧି**—ପ୍ରଥମ ମହାସମରର ଅବସାନ ପରେ ସନ୍ଧି ସ୍ୱାକ୍ଷରିତ ହେଲା । ଗାନ୍ଥିଆ କରିସାରି ଦୁଇ ପଥର ମଧ୍ୟରେ ଥିବା ସନ୍ଧି ଗୁଡ଼ିକ (ଫାଙ୍କ) ବନ୍ଦ କରି ଦେଲେ । ଜଟେଢ଼ଧ୍ୟୁ ଶବ୍ଦର ସନ୍ଧିବିଚ୍ଛେଦ ସେ କରିପାରିଲେ ନାହିଁ । ଆଶ୍ୱିନ ଶୁକ୍ଳ ଅଷ୍ଟମୀ ଓ ନବମୀର ସନ୍ଧିକ୍ଷଣରେ ଅନୁଷ୍ଠିତ ଦୁର୍ଗାପୂଜାକୁ ସନ୍ଧିପୂଜା କହନ୍ତି ।

**ହାତ**—ମୋର ଦୁଇଟି ହାତ ଅଛି । ଦୁଇ ହାତରେ ଏକଗଜ ହୁଏ (ମାପ ଅର୍ଥରେ) । ଜନ୍ମ ଓ ମୃତ୍ୟୁରେ ମନୁଷ୍ୟର ହାତ

ନାହିଁ (ଅକ୍ତିଆର) । ହାତେ ମାପି ଚାଖଣ୍ଡ ଚାଲିବା ଭଲ କଥା । ହାତରେ ନ ମାରି ଭାତରେ ମାରିବା ଅନ୍ୟାୟ । ମଧୁ ତାଙ୍କର ଡାହାଣ ହାତ, ତାକୁ ନ ପଚାରି ସେ କିଛି କରିପାରିବେ ନାହିଁ । ପରଷା ସରିବାରୁ ସେମାନେ ଏକ ସମୟରେ ହାତ ଚଳାଇଲେ (ଖାଇବାକୁ ଆରମ୍ଭ କରିବା) । ସେ ହାତଯୋଡ଼ି ସବୁ କଥା କହିଲେ (କ୍ଷମା ମାଗିବା) । ଯେଉଁଠି ହାତଯୋଡ଼ି ସେଠାରେ ସଉଦା ନ କର (ଡରିବା) । ପାଖକୁ ଆସିବାପାଇଁ ସେ ମୋତେ ହାତ ଠାରିଲେ (ସଙ୍କେତ ଦେବା) । କବିରାଜ ରୋଗୀର ହାତ ଦେଖିଲେ (ନାଡ଼ି ପରୀକ୍ଷା କରିବା) । ଜ୍ୟୋତିଷ ମୋ ବୁଢ଼ା ବାପାଙ୍କ ହାତ ଦେଖିଲେ (ଭବିଷ୍ୟତ ଫଳ କହିଲେ) । ଏହି ଚଗଲା ପିଲାଟି ଚାଲିଲା ଶଗଡ଼ରେ ହାତ ଦେବ (ସ୍ପର୍ଶ କରିବା) । ଦୋଷ କରିଥିବାରୁ ସେ ତାଙ୍କ ହାତ ଧରିଲେ (କ୍ଷମା ମାଗିବା) । ସାତ କଳସ ଆଠ ଦୀପ ମାଡ଼ି ସେ ସାବିତ୍ରୀର ହାତ ଧରିଛି (ବିବାହ କରିବା) । ମନ ଦେଇଛି ଏଣି ତେଣିକି, ହାତ ପଚାଇଛି ଚାଢ଼ିଆଣୀକି । ମୋ ପାଖରୁ ବହି ନେବାକୁ ସେ ହାତ ବଢ଼ାଇଲେ (ମାଗିବା) । ତରକାଷ୍ଟରେ ହାତ ମାର ନାହିଁ (ଛୁଇଁବା) । ସେ ହାତକଟା ସୂତାରେ ଲୁଗା କରନ୍ତି । ସେ ତାଙ୍କ ହାତଟେକା ଭାତରେ (ଅନୁଗ୍ରହ ପ୍ରଦତ୍ତ) କେତେଦିନ ବଞ୍ଚିବେ ? ସେ ଜଗୁଆଳକୁ ହାତ କଲଣି (ନିଜ ଅକ୍ତିଆରକୁ ଆଣିବା), ଏବେ ଚେଷ୍ଟା କରିବ । ମୁହୂର୍ତ୍ତକ ମଧ୍ୟରେ ସେ ଟଙ୍କାକେ ହାତପଇଠ କଲେ । ସେହି ଫିସାଦିଆ ଲୋକଟି ତାକୁ ହାତବାରିସି କରି (ସାହାଯ୍ୟ-କାରୀ) ସବୁ କାମ କରାଇ ନେଉଛି । ଝିଅକୁ ଗୋଟେ ହାତବାକ୍ସ ଦିଆଗଲା । ବରକନ୍ୟାଙ୍କ ହାତଗଣ୍ଠି ପଡ଼ିବା

ବେଳେ ପୁରୋହିତ ମନ୍ତ୍ରପାଠ କଲେ । ପୋଲିସ ଲୋକଙ୍କୁ ହାତ-କଡ଼ି ପକାଇଲେ । ସାମାନ୍ୟ କଥାଲାଗି ପିଲଙ୍କ ଉପରକୁ ହାତ ଉଠାଇବା (ମାରିବାକୁ ଉଦ୍ୟତ ହେବା) ଠିକ୍ ନୁହେଁ । ଆଗ ହାତ ଉଧାର ଟଙ୍କା ପରିଶୋଧ କର (ଦଲିଲ ନକଲ ଦେବା ଋଣ ) ତାପରେ ଅନ୍ୟ କଥା । ସୂତାକଟା ଗୋଟିଏ ହାତ କାମ (କୁଟୀରଶିଳ୍ପ) । ଶୌଚ ପରେ ହାତମାଟି କରିବା ଉଚିତ । ତୁମେ ତାଙ୍କୁ ନିଃସ୍ୱ ବୋଲି କହୁଛ, କିନ୍ତୁ ସେ କଅଣ ହାତର ପାଞ୍ଚ ଗୁଡ଼ିବା ଲୋକ ? ସେ ତାଙ୍କ ପିଠିରେ ହାତ ବୁଲାଇ (ଘଷାଇବା) କାମ କରିନେଲେ ।

ହେବ—ସେ ଦିନେ ଜଣେ ବଡ଼ ପଣ୍ଡିତ ହେବେ । ଏଠାରେ ଦୁଇଶହ ହେବ (ପ୍ରାପ୍ୟ) ଲୋକ ଖାଇଗଲେ । ଏବର୍ଷ ୩ ଥର ଚନ୍ଦ୍ରଗ୍ରହଣ ହେବ (ଘଟିବ) । ଏବର୍ଷ ଯଥେଷ୍ଟ ଆମ୍ବ ହେବ (ଫଳିବ) । ଗଛରେ ଅମ୍ବ ହେଲାଣି (ଫଳିଲାଣି) । ରାଧୁର ସାଧୁ ଉପରେ ୪୦୦ ଟଙ୍କା ହେଲାଣି (ପ୍ରାପ୍ୟହେବ) ।

ବଡ଼—ବଡ଼ ମଣିଷମାନେ (ବୟସ୍କ ଲୋକ) ଏ କାମ କରି ପାରିବେ । ତାଙ୍କ ବଡ଼ ପୁଅଙ୍କର (ଜ୍ୟେଷ୍ଠ) ବିବାହ ଏ ମାସରେ ହେବ । ସେ ବଡ଼ ହିଆଣିଆ (ଅତ୍ୟନ୍ତ) ଲୋକ । ନିଆଁ ବଡ଼ ପାଖରେ ରହି ସେ ଶୋଇଲେ । ବଡ଼ ଦିନ ଛୁଟିରେ (ହିମମାସ) ସେ ଘରକୁ ଯିବେ । ତାଙ୍କୁ ବଡ଼ ରୋଗ (କୁଷ୍ଠରୋଗ) ହୋଇଛି । ତନ୍ତବୁଣା ଲୁଗା ଆମ ଦେଶର ଗୋଟିଏ ବଡ଼ (ପ୍ରଧାନ) ଶିଳ୍ପ ।

---

# ଏକ ଅର୍ଥରେ ବିଭିନ୍ନ ବ୍ୟବହାର

## ( କ ) ଆଶୀର୍ବାଦସୂଚକ ବାକ୍ୟ

୧ । ପାଚିଲା ବାଳରେ ସିନ୍ଦୂର ଥାଉ ( ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ସଧବାବସ୍ଥା ରହୁ ) ।

୨ । କାଚ ବଜ୍ର ହେଉ ।

୩ । ବୁଢ଼ାଟିଏ (ବୁଢ଼ୀଟିଏ) ହୋଇଥାଅ (ଦୀର୍ଘାୟୁ ହେବା) ।

୪ । ସୁବର୍ଣ୍ଣ ବାହା ବଜ୍ର ହେଉ ।

୫ । ଚୋ ରୋଗ ବୈରାଗ (ଆଉଜାଯାଉଜା) ଝାଡ଼ ଝୁଡ଼ ହେ । (ନୀରୋଗ ହେବା) ।

୬ । ଅଇସୁଲକ୍ଷଣୀ ହୋଇଥା ।

୭ । ସୁନା ନାଗି ପୁଅ ପା ।

୮ । ଅଜାମର ହୋଇଥା ।

୯ । କୁଳ ବୃଦ୍ଧାଳ ହେଉ (ବଂଶ ବୃଦ୍ଧି ହେଉ) ।

୧୦ । ଧାନ ଗୌଣୀ ପଣେ ହେଉ (ଅଣେ) ।

୧୧ । ଗଣ୍ଡୀପୁଅ ଜଣେ ହେଉ (ଗଣ୍ଡୀପୁଅ ଗଣ୍ୟ ହେଉ) ।

୧୨ । ଗାଈ କ୍ଷୀରବନ୍ତ ହେଉ ।

୧୩ । ବନ୍ଧ୍ୟା ପୁତ୍ରବନ୍ତୀ ହେଉ ।

୧୪ । ହରିବୋଲ ।

୧୫ । ଚୋ ଚୂନା କୁଲ ସୁନା ହେଉ ।

୧୬ । ଗୋଟିକରୁ କୋଟିଏ ହେଉ ।

୧୭ । କୁଳ ଉଜ୍ଜ୍ୱଳ ହେଉ ।
୧୮ । ତୋର ଅହ୍ୱଅ ସିନ୍ଦୂର ନ ଲଭୁ ।

## (ଖ) ଅଭିଶାପ ଓ ଭର୍ତ୍ସନାସୂଚକ ବାକ୍ୟ ।

୧ । ସଞ୍ଜେ ଫୁଟି ସକାଳେ ଯା ।
ଜହ୍ନୀଫୁଲ ଆୟୁଷ ପା । (ଅଳ୍ପାୟୁଷ ହେବା)
୨ । ଭିଟାମାଟି ଉଚ୍ଛନ୍ନ ହେଉ ( ବଂଶରେ ସମସ୍ତେ ମରିଯାଆନ୍ତୁ ) ।
୩ । ତୋ କୁଳ ବୁଡୁ ।
୪ । ତୋ ପିଣ୍ଡକୁ ଭରସା ନ ଥାଉ ।
୫ । ତୁମ ଘରେ ମକଦ୍ଦମା ପଶୁ ।
୬ । ତୋ କୁଳରେ ଦୀପ ଜାଳିବାକୁ କେହି ନ ରହୁ ।
୭ । ତୋ ନାଁ ଲୁଚୁ ।
୮ । ସେ ତୋ ନାଁରେ ପାଣି ଠେଲୁଛି (ସମ୍ପିବା) ।
୯ । ତୋ ନାଁ ଲିଭିଯାଉ ।
୧୦ । ତୋ ମୁହଁରେ ନିଆଁ ଦେବାକୁ କେହି ନ ଥିବେ ।
୧୧ । ତୋ ଜଗରଘରେ ନିଆଁ ଲାଗୁ ।
୧୨ । ତୋ ମୂର୍ଦ୍ଧନା ଫାଟିଯାଉ ।
୧୩ । ତୋ ଉପରେ କାଠ ଜଳୁ (ରଇ ଜଳୁ) ।
୧୪ । ତୋ ଉପରେ ବଳକା କାଠ ଜଳୁ ।
୧୫ । ତୋ ଉଦରେ ବାଇଗଣ୍ଡ ଲାଗୁ ।
୧୬ । ତୋ ଦେହରେ ଖୋଡ଼ ଫୁଟୁ (କୁଷ୍ଠ ରୋଗ ହେଉ) ।

## (ଗ) ଶପଥସୂଚକ ବାକ୍ୟ

୧ । ଶତକୋଟି ବିଦ୍ୟାଗୁଣ, ଠାକୁରଙ୍କ ଗୁଣ ।
୨ । ଆଖି ଗୁଣ, ଭାଇ ଗୁଣ, ବାପ ଗୁଣ ଡିଙ୍ଗିଗଲ ।
୩ । ପୁଅ ମୁଣ୍ଡ ଛୁଇଁବା, ଆଖି ଛୁଇଁବା ।
୪ । ଗୋରୁ ଲାଙ୍ଗୁଡ଼ ଛୁଇଁବା ।
୫ । ଆପଣଙ୍କୁ ଜଗନ୍ନାଥ ଦୋହି ।
୬ । ସେ ଠାକୁରାଣୀଙ୍କୁ ଅନେଇ କହିଲ ।
୭ । ତମ୍ବାତୁଳସୀ ଛୁଇଁବା ।
୮ । ସେ ଶପଥ କରି କହୁଛି ।
୯ । ବିଦ୍ୟା ଦୁଇ ।

## (ଘ) ମରିବା ଅର୍ଥରେ ବ୍ୟବହୃତ ବାକ୍ୟାବଳୀ

(୧) ସେ ମରିଗଲେ ।
(୨) ତାଙ୍କର କାଳ ହେଲା ।
(୩) ସେ ଆଜି ଇହଧାମରେ ନାହାନ୍ତି ।
(୪) ସେ ସ୍ୱର୍ଗବାସୀ ହେଲେ ।
(୫) ସେ ସ୍ୱର୍ଗାରୋହଣ କଲେ ।
(୬) ସେ ପଞ୍ଚତ୍ୱ ପ୍ରାପ୍ତ ହେଲେ ।
(୭) ତାଙ୍କ ପ୍ରାଣବାୟୁ ଉଡ଼ିଗଲା ।
(୮) ତାଙ୍କ ସାହା ଉଡ଼ିଗଲା ।
(୯) ତାଙ୍କ ହଂସ ଉଡ଼ିଗଲା ।
(୧୦) ଅଧା ଗୃହରେ ବାପ ମଲା । ପୁରା ଗୃହରେ ମା ଗଲା ।
(୧୧) ସେ ଚିରକାଳ ପାଇଁ ଆଖି ବୁଜି ଦେଲେ ।

(୧୨) ସେ ମୃତ୍ୟୁ ମୁଖରେ ପଡ଼ିଲେ ।
(୧୩) ସେ ଚାଲିଗଲେ ।
(୧୪) ସେ ଦେହ ତ୍ୟାଗ କଲେ (ଦେହ ଛାଡ଼ିବା) ।
(୧୫) ତାଙ୍କର ବୃନ୍ଦାବନ ପ୍ରାପ୍ତି ହେଲା ।
(୧୬) ସେ କଟେଇ ଗଲା (ବସନ୍ତରେ ମରିବା) ।
(୧୭) ନାରାୟଣ ପାଇବା । ଇହଲୀଳା । ଦେହାନ୍ତର ହେଲା । ତାଙ୍କ ଦେହାତ୍ୟୟ ଘଟିଲା । ଲୋକାନ୍ତର ହେଲା ।

## (ଙ) ଘରଦ୍ୱାର ସଫା କରିବା ଅର୍ଥରେ—

୧ । ଓଳେଇବା, ୨ । ଝାଡ଼ୁ କରିବା, ୩ । କଚେଇବା, ୪ । ପହଁରେଇବା, ୫ । ସଫା କରିବା, ୬ । ଅଳିଆ ପୋଛିବା ।

## (ଚ) ପିଲାଙ୍କୁ ଡାକିବା ଅର୍ଥରେ

୧ । ଧନମଣି, ୨ । ସଙ୍ଖାଳି, ୩ । ବାପଧନ, ୪ । ସ୍ନେହ-ପିତୁଳି, ୫ । ଅନ୍ଧର ଲଉଡ଼ି, ୬ । ପିଣ୍ଡପ୍ରାଣ, ୭ । ମଉଡ଼ମଣି, ୮ । ପ୍ରାଣଧନ, ୯ । ଜୀବଜୀବନ, ୧୦ । କୁଳମଣ୍ଡଳି, ୧୧ । ଧନମାଳି, ୧୨ । ଦୁଃଖୀସଙ୍ଖାଳି, ୧୩ । ରଙ୍କପସରା, ୧୪ । ଗଳାହାର, ୧୫ । ସୁନାହାର, ୧୬ । ଗଣ୍ଠିଧନ, ୧୭ । ବାବୁମଣି, ୧୮ । ସଂସାର ସାର, ରଙ୍କୁଣୀ ଧନ ।

## (ଛ) ବିବାହ କରିବା ଅର୍ଥରେ—

୧ । ତାର ବାହାଘର ହେଲା, ୨ । ହାତକୁ ଦୁ ହାତ କରିବା । ୩ । ସେ ଯାହା ହାଣ୍ଡିରେ ଗୁଣ୍ଡିଲ ପଶିଛି, ତାଙ୍କ ଘରକୁ ଯିବ ।

୪ । ପାଣିଗ୍ରହଣ, ୫ । ତାଙ୍କର ସବୁ ଦିଅ ହଲ ଘରେ ପଡ଼ିଛନ୍ତି, ୬ । ପ୍ରଜାପତି ସମ୍ବନ୍ଧ, ପିତାମାତା ଅନ୍ଧ । ୭ । ମଙ୍ଗଳକୃତ୍ୟ । ୮ । ହାତ ଧରିବା, ୯ । ଦୁବ ମଣ୍ଡଳ ଚଢ଼ିବା, ଘରେ ବସିବା ।

## (ଜ) ଦୁଧ ସ୍ଥଳରେ—

୧ । ଦୁଧ, ୨ । କ୍ଷୀର, ୩ । ଗୋରସ, ୪ । ନଡ଼ିଆଣୀ, ୫ । ନଳାପାଣି ।

## (ଝ) ମାଂସ ସ୍ଥଳରେ—

୧ । ନାଲିସଜ, ୨ । ଶାଗୁଆ ଡ, ୩ । ଶିକାର ।

## (ଞ) ଗର୍ଭବତୀ ଅର୍ଥରେ

୧ । ଦେହ ଭାରି ହେବା, ୨ । ମାସ ଚଢ଼ିଯିବା, ୩ । ଅସଜ ହେବା, ୪ । ଭାଗ୍ୟ ବିଢ଼ିବା, ୫ । ଭାଗ୍ୟ ଉଦୟ ହେବା, ୬ । ଚଳୁଘର ହେବା ।

## (ଟ) ବିଶିଷ୍ଟ ଅର୍ଥରେ ବ୍ୟବହାର

୧ । ତା କପାଳରେ ମାଡ଼ ମାଚୁନ୍ତି (ଯୋଗ୍ୟାର୍ଥରେ) ।

୨ । ପୋଖରୀଟି ପାଣିରେ ଜୁଉ୍ ବୁଉ୍ (ପୂର୍ଣ୍ଣ) ।

୩ । ମୋ ଦେହରେ ଭାତ ଯାଉ ନାହିଁ (ହଜମ ହେବା) ।

୪ । ବାଘ ମାରିଲେ ଦମ୍ମଣ୍ଡ ନଷ୍ଟେ ଖାଇବ (ଉନ୍ମତ୍ତହେବା) ।

୫ । ସେ ପାଣିକି ଯାଉଛନ୍ତି (ପାଇଁ ଅର୍ଥରେ) ।

କୁମ୍ଭାର ଘର ବୋହୂ
ଖାଟିକି ନ ଯାଇ ମାଟିକି ଯାଉ ।

୬ । ସେ ତାକୁ କଥାରେ **ବାଆଁରେଇ** ଭୁଲାଇ ଦେଲା ।

୭ । ଗଜେନ୍ଦ୍ର **ଗାଈକୁ** ପାଉଛି (ଚରାଇବା) ।

୮ । ତା ଦେହରୁ **ତେଲ ନଗିଡ଼ି ପଡ଼ୁଛି** (ଲାବଣ୍ୟ) ।

୯ । **ଡୋଙ୍ଗି ପେଟୁଆ** ହବସ୍ତ ଖାଏ, **କଣ୍ଡୋରୁ ପେଟୁଆ** ନା'ରେ ପାଏ (ଆକାର ଅର୍ଥରେ) ।

୧୦ । **ତାଙ୍କ** ଦବାନ୍ଧ ପାଇଁ ଦନ **ସୁଙ୍କୁ** ନାହିଁ (ଧାର୍ଯ୍ୟ ଅର୍ଥରେ) ।

୧୧ । ତାଙ୍କର ଦାନା ଛୁଟୁ ନାହିଁ (ଇଚ୍ଛା ଅର୍ଥରେ) ।

୧୨ । ସ୍ତରିଟା ଯାକ ଆଖି ପଲକ ପଡ଼ନାହିଁ (ଅନିଦ୍ରା ଅର୍ଥରେ) ।

୧୩ । ତାଙ୍କୁ ଏଠା **ପାଣି** ଆରଜ **ନାହିଁ** (ଦେହରେ ନପିବା) ।

୧୪ । ସେ ମୋ କଥାକୁ ହେଣ୍ଡେଇ ଦେଲା (ଅମାନ୍ୟ କରିବା) ।

୧୫ । ମୋ ନାଁରେ ସେ ଚୁଗୁଲି କରୁଛି (ନିନ୍ଦା କରିବା) ।

୧୬ । ମାଧ ହଳକୁ ପାଉଛି (କରିବା) ।

୧୭ । ପିଲାଟି ମୋ କଥାକୁ କାନେଇଛି (ଶୁଣିବା) ।

୧୮ । ତୁ ମୋତେ ଆଉ ଜଳାନା (ହରକ୍ତ) ।

୧୯ । ବୁଧିଆ ଦେହୁରି ଆମ ହଳକୁ ପାଣି **ବହରେଇ** ଦେଲା (ବାଟ ଦେଖାଇବା) ।

୨୦ । ତାକୁ କଣ ଭୂତ ଲଗିଲା କି ? (ପାଗଳାମି)

୨୧ । ଘରଟି **ସନ୍ଧାଉଛି** (ଓଦା ହେବା) ।

୨୨ । ମରଣକୁ ଏଡ଼ିବା କାହାର **ଗୁରା** (ଶକ୍ତି) **ଅଛି** ?

୨୩ । ମନ ତାର ଫିକା ପଡ଼ିଗଲା (ନିରାଶ ହେବା) ।

୨୪ । ଦୁଧ ଉତୁରିଲେ ଚୁଲିକୁ
ମଣିଷ **ଉତୁରିଲେ ଗାତକୁ** ( ଗର୍ବ ଓ ମୃତ୍ୟୁ ) ।

୨୫ । ସହି ସହି ଭୁଷ **ପଥର** (ଟାଣ) ହେଲାଣି ।

୨୬ । ସେ ବଡ଼ **ପଣ୍ଡୁଆର** (ବିଶ୍ୱାସ) ଦେଖାଉଛି ।

୨୭ । ପଥରଟି ଉକ୍କୁ ନାହିଁ (ଚଳୁନାହିଁ) ।

୨୮ । ସେ ଏଠାରେ ଉଙ୍କି ମାରୁଛି ।
ସେ ଏଠାରେ ପଇଁତରା ମାରୁଛି (ଅପେକ୍ଷାରେ) ।

୨୯ । ସୁନା ଦେହ ଚୂନା (ନଷ୍ଟ) ହୋଇଗଲା ।

୩୦ । ମୁଁ କାହା ଘରକୁ ହାତପାତ ଯାଇ ନଥିଲି (ମାଗିବା) ।

୩୧ । ନଈ ନ ଦେଖୁଣୁ ଲଙ୍ଗଳା (ଅବାଞ୍ଛନୀୟ ସତର୍କତା) ।

୩୨ । ତୁଳସୀ ଦୁଇପତରୁ ବାସେ (ଜନ୍ମରୁ) ।

୩୩ । ସ୍ତ୍ରେଉର ମୁହଁ ଟାଣ ।
ମୁହଁ ନଚେରନ୍ତୁ, ପିଠି ଅଭେଷିତ (ପ୍ରଚ୍ଛେଦ୍‌ଭଙ୍ଗା) ।

୩୪ । ଦୁଇ ମୁଡହେଁ ବର୍ଷା ଛାଡିଲା (ଘୋର ବର୍ଷା) ।

୩୫ । ତାଙ୍କ ଆପ୍ତ କୁଟିର ନାହିଁ (ଆଶିବା) ।

୩୬ । ଆପଣ ମଣିଷ ଚରାଉଛନ୍ତି,
ଆମେ ଗୋରୁ ଚରାଉଛୁ । (ପଣ୍ଡିତ ଲୋକ) ।

୩୭ । ସେ ଗୁଳିଲା ଶଗଡ଼ରେ ହାତ ଦେବାବାଲା (ଦୁଷ୍ଟାମି) ।

୩୮ । ସେ ବନା ସୂତାରେ ହାଟ କରିବାବାଲା (ଗୁଲ୍‌କା) ।

୩୯ । ସେ ମୋ କଥାରେ ଟଙ୍କିଲା (ଟଳିଲା) ନାହିଁ ।

୪୦ । ମୋ ଗୁଇ ପଡ଼ିଲେ ତା ନାକ ଡେଇଁଛି (ଘୋର ଶତ୍ରୁତା) ।

୪୧ । ଫଟା ହାଣ୍ଡିକୁ ତଳିହାଣ୍ଡିଆ କରି କେତେଦିନ ଚଳିବ ?
(ଘର ପୃଥକ୍ ହେଲେ ମିଶାଇବା ଅଚଳ)

୪୨ । ତେଲ୍ ଦିଆରୁ ଘିଅ ଦିଆ ଜଣାପଡ଼େ ।
(ଆରମ୍ଭରୁ ପରିଣତିର ସୂଚନା)

୪୩ । ଯାହାର ତେଲ ପସରା ଗଡ଼ିଗଲା ସେ କହିଲା, ହାୟ ! ଯାହାର ନଡ଼ିଆ ପସରା ପଡ଼ିଗଲା ସେ କହିଲା, (ହାୟ କପଟ ଦୁଃଖ ପ୍ରକାଶ) ।

୪୪ । ସେ ମୂଣ୍ଡ ଗଡ଼େଇଲଣି ।
(ମର ମର ହେବା ବା ଅଭାବ ଛଳନା କରିବା)

୪୫ । ଠାକୁରାଣୀ ଏ ଗାଁରୁ ମୁଣ୍ଡେ ଖାଇଲେ ।
(ହଇଜାରେ ଜଣେ ମରିବା)

୪୬ । ସେ ସ୍ୱପ୍ନ ଦେଖୁଛନ୍ତି (ଅପକୃଷ୍ଟ କଳ୍ପନା) ।

୪୭ । ତାର ଦେହ ଦୋଷ କର୍ମ ହେଲା ।
ତା ଦେହରେ ମାଛି ପଡ଼ିଲା ।
ତାର ମାଛିଆ ପାତକ ହେଲା ।
ତା ଦେହରେ ଫୁଲ ପଡ଼ିଲା ।
(ବଡ଼ ବେମାରରେ ଘାରେ ପୋକ ପଡ଼ିଗଲେ)

୪୮ । ସେ କାଲି ଭିଆଇଲେ ।
ଦୁଇଜଣଙ୍କର କାଳ ଭିଆଣ (ସୃଷ୍ଟି କରିବା),
ଲାଭ ମାରିନେଲା ତୃତୀୟ ଜଣ ।

୪୯ । ତା କଥାରେ ଅଳକୂଳ (ଠିକଣା) କିଛି ମିଳିଲା ନାହିଁ ।

୫୦ । ସେ ସମସ୍ତଙ୍କୁ ମାରି ପଦା କରିଦେଲା ।

୫୧ । ତାଙ୍କ ଆଖିରୁ ଜୁଳୁଜୁଳିଆ ଖସିଲା ।

୫୨ । ସେ ଉଡ଼ୁଉଣିଆ ବୁଦ୍ଧି ଗୁଡ଼ନାହିଁ (ନିଃସ୍ୱ ହେବା) ।

୫୩ । କଥାବାର୍ତ୍ତା ହେବାକୁ ମୋର ତର (ଅବସର) ନାହିଁ ।

୫୪ । ସେ ତାଙ୍କ ଦହକରେ ଏକଥା ଦେଖି ନ ଥିଲେ ।
(ଜୀବନରେ)

୫୫ । ସେ ବଡ଼ ହେବାକୁ ଠୁଟିଲା ମଙ୍ଗଲ ନାହିଁ (ଆଦୌ) ।

୫୬ । ତାଦ୍ୱାରା ଶାଗ ସିଝିବ ନାହିଁ (କିଛି କାମ ନ ହେବା) ।

୫୭ । ତାଙ୍କ ଦୁହିଁଙ୍କ ଭିତରେ ପାଣି ଗଳୁନାହିଁ (ଘନିଷ୍ଠ ବନ୍ଧୁତା) ।

୫୮ । ସେ ହିଁଅଛି ଗୃହର ଚଉଷଠି, ଟାଳିକ ବନ୍ଧା (ଅତି ଗୁଣିକ)

୫୯ । ସେ ହିଁଅଛି ବଡ଼ ହେଲା । (ପ୍ରାପ୍ତ ବୟସ୍କ ହେବା)

୬୦ । ସେ ଛୁଆଟି ସାତସାଗରେ ସାରେ ।
ତାକୁ ସାଇତିବା ସହଜ କଥା କି ?

୬୧ । ସେ ପାଠପଢ଼ାର ଧାର ଧାରେ ନାହିଁ ।

୬୨ । **ଷୋଳ ଅଣା** (ପୂରାପୂରି) ମନକୁ ପାଇଲା ।

୬୩ । ଲୁଗାରେ **ଆମ୍ବ କଷ** (ଦାଗ) ଲାଗିଛି ।

୬୪ । ତୁମ କଥା ମୋତେ **ଚଟା** ଲାଗୁଛି (ବିରକ୍ତ ଲାଗିବା) ।
ସାବୁନଦ୍ୱାରା ସେ ତେଲ ଚଟା ଛଡ଼ାଇଲେ
(ଅଠାଳିଆ ଦାଗ) ।

୬୫ । ସେ ସ୍ତ୍ରୀ ଲୋକଟି **ଦୁଃଖ** ପାଉଛି (ପ୍ରସବ ବେଦନା) ।

୬୬ । ଗରମ ପାଣିରେ ହାତ ବୁଡ଼ାଇବା ଅନୁଚିତ ।
ସେ ମୋ ଟଙ୍କା ବୁଡ଼ାଇ ଦେଲା ।

୬୭ । ଶଗଡର ହାଲ ଲୁହାରେ ତିଆରି ।
ରୋଗୀର **ହାଲ୍** ଭଲ ନୁହେଁ (ଅବସ୍ଥା) ।

୬୮ । ସେ ସବୁ **ମୁଣ୍ଡାଇଛି**, ସେ ବୁଝିବ (ଦାୟିତ୍ୱ ନେବା) ।

୬୯ । ତା ପେଟରେ ଭାତ **ଜୀଇଛି** (ଅଜୀର୍ଣ୍ଣ ହେବା) ।

୭୦ । ଚଷା **ହୁଡ଼ିଲେ** ବରଷେ (ଭୁଲିବା) ।

୭୧ । ସେ ମୋତେ **ବଢ଼ିଲେ** (ପରୀକ୍ଷା କରିବା) ।

୭୨ । ଗୁଣିଆ ତାଙ୍କ ଘର କଳିଲା ।
ସେ ତାଙ୍କ ଦେହ କଳିଲେ ।

୭୩ । ମୋ ବେକରେ ଗାମୁଛା ପକାଇ ଝିଙ୍କୁଛି (ଟାଣିବା) ।

---

# ବିପରୀତବୋଧକ ଶବ୍ଦ

| | |
|---|---|
| ନୂଆ | ପୁରୁଣା |
| ଅରୁଆ } | ଉଷୁନା |
| ଉଆ } | |
| କଳା | ଗୋରା |
| ସରୁ | ମୋଟା |

(କଥା ମାଜିଲେ ମୋଟ,
ସୂତାମାଜିଲେ ସରୁ )

| | |
|---|---|
| ଦୂର { | ନିକଟ |
| | ପାଖ |

(ଭାବକୁ ନିକଟ ଅଭାବକୁ ଦୂର
ଦୂର କନିଅ ନିକଟ ବାଜି,
ଦୂର ମଠାଳ ପାଖ ବାଜି)

| | |
|---|---|
| ଖାଲ | ଢିପ |
| ଖୋଲା | ମୁଦା |
| ମେଲା | ବନ୍ଦ |
| ହସ | କାନ୍ଦ |
| ଜମା | ଖରଚ |
| କଅଁଳ | ଟାଣ |
| ଥଣ୍ଡା | ଗରମ |
| ଆଲୁଅ | ଅନ୍ଧାର |
| ବାହାର | ଭିତର |
| ଜୟ | ପରାଜୟ |
| ଗୋଳିଆ | ସଫା |
| ଉଚ୍ଚା | ନୀଚ୍ଚ |
| ଉଚ୍ଚ | ଖାଲ |
| ଧନୀ | ଗରିବ |
| ଖରା | ବର୍ଷା |
| ମିଠା | ଖଟା |
| ଓଦା | ଶୁଖିଲା |
| ଶାନ୍ତ | ବୋହ୍, |
| ଭାବ | ଅଭାବ |
| ଅଳ୍ପ | ବହୁତ |
| ଅଳ୍ପାୟୁ | ଦୀର୍ଘାୟୁ |
| ଲଗିଖିଆ | ମାଗିଖିଆ |
| କଞ୍ଚ | ପାକଳ |
| କଟି | ଫୋଖଡ |
| ବାସି | ସଜ |
| ଆଗ | ପଛ |
| ଉପକାର | ଅପକାର |
| ଉଭା | ପୋତା |

(ଉଭା ତାଳ, ପୋତା ଶାଳ, ଗଣ୍ଡି
ବେତାଳ, ରୁଅ ହେନ୍ତାଳ
ଏ ଭୁଲଯିବ ଅପାର କାଳ ।)

| | |
|---|---|
| ଅଗ | ମୂଳ |
| ଶସ୍ତା | ମହଙ୍ଗା |

ନରମା {ଟାଣୁଆ / କଡ଼ା}
ପୌଷ ମାସ—ସର୍ବନାଶ
(କାହାର ପୌଷ ମାସ
କାହାର ସର୍ବନାଶ)
ସର୍ବୋଦୟ ସର୍ବନାଶ
ସାଦା କଡ଼ା (ପାନ)
ସହଜ କଠିନ
ସରଳ ଜଟିଳ
ସିଧା ବଙ୍କା
ଧାରୁଆ ଦନ୍ତୁଡ଼ା
ନଦା ଫମ୍ପା
ସୁନ୍ଦର {କୁତ୍ସିତ, / ଅସୁନ୍ଦର}
କର୍ମଠ କର୍ମକୁଣ୍ଠ
କାମିକା {ନକମା, / ଅଲହୁଆ}
ଶୁକ୍ଳ କୃଷ୍ଣ
ମୂର୍ଖ ପଣ୍ଡିତ
କୁଳମଣି କୁଳାଙ୍ଗାର
କୃପଣ ଦାତା
ମୂଲିଆ ମାଲିକ
ପ୍ରଭୁ ଦାସ
ହାକମ ଗୋଲାମ
ବ୍ରାହ୍ମଣ ଚଣ୍ଡାଳ

ଢିଂ ନାଣ୍ଟି
ଗୁରୁ ଲଘୁ
ଗୁରୁ ଶିଷ୍ୟ
ପିଲ୍ଲ ଭେଣ୍ଡିଆ
ନିନ୍ଦା ପ୍ରଶଂସା
କଳା ଧଳା
କଞ୍ଚା ସିଝା, ପାକଲ
ମଠ ଚରବର
ଧୀର / ସ୍ଥିର } { ଚରଚର; / ଚଞ୍ଚଳ
(ଧୀର ପାଣି ପଥର କାଟେ)
ଟାଣ ନରମ
ଉପର ତଳ
(ତଳ ବରଡ଼ା ଖସୁଛି,
ଉପର ବରଡ଼ା ହସୁଛି।
ମଝି ବରଡ଼ା ଥାଇ ବୋଲୁଛି
ମୋ ଦିନକାଳ ଆସୁଛି।)
ଅଧ ଊର୍ଦ୍ଧ୍ୱ
ନିଶ୍ୱାସ ପ୍ରଶ୍ୱାସ
ଦୈର୍ଘ୍ୟ ପ୍ରସ୍ଥ
ଲମ୍ବ ଓସାର
ଘଞ୍ଚ ଝିନ
ହାନି ଲାଭ
ଲାଭ କ୍ଷତି

| | | | |
|---|---|---|---|
| ସନମାନ | ହୀନମାନ | ରକ୍ଷକ | ଭକ୍ଷକ |
| ଆପଣା, ନିଜ | ପର | ମାଗୁଣୀ | ଯାଚୁଣୀ |
| (ପର କି ଆପଣା ହୋଇବ ? | | ଜିଠିଆ | ପଢ଼ୁଆ (ଜୁଆର) |
| ଗାଁମୁଣ୍ଡରେ କରିବ ଘର | | ରୁଗ୍‌ଣ | ସୁସ୍ଥ |
| କିଛି ଆପଣା କିଛି ପର ।) | | ଶ୍ରେଷ୍ଠ | ବଡ଼ |
| ସୁଖ | ଦୁଃଖ | (ଆଖି ବଡ଼, ପେଟ ଶ୍ରେଷ୍ଠ) | |
| ସତ | ମିଛ | ସୁପ୍ତ | ଜାଗ୍ରତ |
| ସତୁଆ, ସଚ୍ଚିଆ ମିଛୁଆ | | ଉଦୟ | ଅସ୍ତ |
| ଭଲ | ମନ୍ଦ | ଜନ୍ମ | ମୃତ୍ୟୁ |
| ଖାଣ୍ଟି | ମିଶା, ଭେଜାଲ | ସଞ୍ଜ | ସକାଳ |
| ଭଲ | ଖେଳ | ମେଲ | ବୁଜା (ବାଡ଼) |
| ବଢ଼ିଲିଆ | ପାଣିଆ | ବନ୍ଧା | ଫିଟା (ଗୋରୁ ଗାଈ) |
| ଊଣା | ଅଧିକ | ଗ୍ରୀଷ୍ମ | ବର୍ଷା |
| ବେଶୀ | କମ୍ | ବିଧବା | ସଧବା |
| ରଜା | ପ୍ରଜା | ଖଣ୍ଡ | ଅଖିଅ |
| ଦୁଃଖୀ | ସୁଖୀ | ହୁଣ୍ଡା | ଝିଆଣିଆ |
| ଘର | ଜଙ୍ଗଲ, ହାଲୁକା | ଛବିତ | ପଖାଳ (ଭାତ) |
| ଚୋର | ସାଧୁ | ଫଟା | ଗୋଟା |
| ପାପ | ପୁଣ୍ୟ | (ମଇଁଷି ଶିଙ୍ଗ ଫଟା, | |
| ମୋଟା | ପତଳା, ସରୁ | ଯୁଝିଲ ବେଳକୁ ଗୋଟା ) | |
| ସାନ | ବଡ଼ | ମହାଜନ | ଖାତକ |
| ଜ୍ୟେଷ୍ଠ | କନିଷ୍ଠ | ତେଲିଆ | ଲୁଖୁରା |
| ଗାଁ ଗଣ୍ଡା | ସହର ବଜାର | (ତେଲିଆ ମୁଣ୍ଡରେ ତେଲ | |
| ଦାତା | ଗ୍ରହୀତା | ଲୁଖୁରା ମୁଣ୍ଡକୁ ଫେଲ) | |

ବିଷ ଅମୃତ
ଗେହ୍ଲ ଗାଳ
ମଳମୂଣ୍ଡିଆ ଧୋବ ଧାଉଳିଆ
ସ୍ୱାଧୀନ ପରାଧୀନ
ବଗିଡ଼ା ସୁଧୁରା
( ଅଇଲକା ବଗିଡ଼ା,
କଭ୍ ନେହ୍ନିଁ ସୁଧୁରା । )
ଧାନ ବାଲୁଙ୍ଗା
ମୃକୁଳା ବନ୍ଧା
କୁନ ପୁଅ ବୁଢ଼ା ପୁଅ
ମେଘୁଆପାଗ ଖରା ପାଗ
ଘର କରଣା ଘର ଭଙ୍ଗା (ବୁଦ୍ଧି)
ପାଣିଆ କାଠୁଆ
ଡର ସାହସ
ଚିନ୍ତିତ ନିଶ୍ଚିତ
ଚେଛଉଣ୍ଡି ବାପଥିଲା
( ବାପଥିଲା ପୁଅ ସଙ୍ଗରେ
ହାରେ ନାହ୍ନିଁ )
ବାକୀ ଶେଷ
ଆକାଶ ପାତାଳ
ଅସନା ନିକ
ଖଦଡ଼ିଁ ଚିକଣ
ବେରାମ ଆରାମ

କଟି ମିଠି
ସୁନା ପୁଅ ଘୁଅ ପୁଅ
ଅସଲ ନକଲ
ଭର ଉଜୁଡ଼ା (ବୃକ୍ଷ)
ଦୁଷ୍ଟ ଶିଷ୍ଟ, ସନ୍ଥ
( ଦୁଷ୍ଟ ନବାର୍ ସନ୍ଥ ପାନ୍ତୁ )
ବ୍ରେକ ଠୋକ ଗୋଳିଆ ମିଶା
ଜଦ୍ ଖୋଇ ଶାକମା
ଜୁଆର ଭଟ୍ଟା
ପକା କଚ୍ଚୁ (ଘର)
ସଜଡ଼ା ବଗଡ଼ା
ବାପୁ ମୁସ୍ତରା
ଗାଉଁଲିଆ ସହରିଆ
ଚେତନ ମାନ୍ଦା
କଅଁଳ ବୁଢ଼ା (ଜନ୍ତୁ)
ଉଚ୍ଛୁଳା ଶୁଖିଲା (ନଈ)
ପୋଇଲ ସାଆନ୍ତାଣୀ
ପଥର ଶୋଲ
(ହରି ବୋଲ୍ ଭାଇ
ଗୋବିନ୍ଦ ବୋଲ୍,
ଭାସିଲା ପଥର,
ଡୁବିଲା ଶୋଲ)
ଧୋଇ ମରୁଡ଼

ମଞ୍ଜିଳ    ମଠ
ଅଜା    ନାତି
ଆଈ    ନାତୁଣୀ
ଆମଦାନି    ରପ୍ତାନି
ଆପ୍ତ    ବ୍ୟସ୍ତ
ଜଳ    ସ୍ଥଳ
ସ୍ୱଚ୍ଛଳ } { ନଅଣ୍ଟିଆ
ବଳକା } { ଅକୁଳାଣ
ସର୍ବୋଚ୍ଚ    ସର୍ବନିମ୍ନ
ଜନଗହଳ }
ଜନବହୁଳ } ଜନବିରଳ
ବିରୁଦ୍ଧ    ସପକ୍ଷ
କଷ    ଢିଲ
ମଜୁଆ
ଖିଆଲବାଗି } ବିଷ୍ଟରବନ୍ତ
ଝୁଙ୍କି
ଆରମ୍ଭ    ଶେଷ
ମିତବ୍ୟୟୀ    ଅପବ୍ୟୟୀ
ଦୋଷୀ    ନିର୍ଦ୍ଦୋଷ
ଗୁଣୀ    ନିର୍ଗୁଣ
ଜ୍ଞାନୀ    ଅଜ୍ଞାନ
ଅପରାଧୀ    ନିରପରାଧ
ଧନୀ    ନିର୍ଦ୍ଧନ
ବିବେକୀ    ଅବିବେକ
ରଢ଼    ଅଙ୍ଗାର
ରୁଆ    ଉପୁଡ଼ା
(ରୁଆ ଧାନ ପୁଆ)

ସୁରୁ    ଆଖର
ତୁଳସୀ    ଧତୁଆଡ
ଗୋଳ }
ଗୋଳିଆ } ସଫା (ପାଣି)
(କଙ୍କଡ଼ାକୁ ଗୋଳପାଣି ସୁହାଏ)।
ମଳିନ    ନିର୍ମଳ
ଚଡ଼ା ଦର    ଶସ୍ତା ଦର
ସବୁଦିନିଆ    ଦିନକିଆ
ଘର    ପର
(ବୁଦ୍ଧି ନ ଆସଇ ଘରକୁ,
କଷ୍ଟ ଦେଉଥାଇ ପରକୁ)।
ସମ୍ପଦ    ବିପଦ
(ସମ୍ପଦକାଳେ ସର୍ବେ ସଖା,
ବିପଦେ ନ ଦିଅନ୍ତି ଦେଖା)
ଦୃଢ଼    ମୂଢ଼
(ଦୃଢ଼ ଭରେ କି ମୂଢ଼ ଭରେ,
ମଝି ମଝିକିଆ ବୁଡ଼ି ମରେ)
ମାଇଗୁଲିଆ }
ମାଈଚିଆ } ଅଣ୍ଡିରଚଣ୍ଡୀ
ଲୁଡ଼ିଆ }
ଫଲ } ଅଛାଳ
ବରଧର    ବରକାଢ଼ୁଣୀ
ସାସ୍ତ    ନିରସ୍ତ
ବିକାଳ    ନିଖାଳ

| | |
|---|---|
| ପିଅଣିଆ } ଚଉଙ୍ଘ } | ହୁଣ୍ଡୀ |
| ଛୁଣ୍ଡାକନା | ପାଟପଚମା |
| ଦାସୀ | ସାନ୍ତାଣୀ |
| ଆଏଦା | ପିତ୍ତଳ (ସାଃଳ) |
| ପନ୍ଥଲପାନ | ଶେଷପାନ |
| କଳହୁଡ଼ୀ | ସୁଆଗୀ |
| ସୁଲକ୍ଷଣୀ { | କୁଲକ୍ଷଣୀ / ଅଲକ୍ଷଣୀ |
| ଆବାଦୀ | ଅନାବାଦୀ (ଜମି) |
| ପୁନେଇଁ | ଉଆଁସ |
| ବେଦର ଗାର | ପାଣିର ଗାର |
| ଜଗ | ପୋଛା |
| (ଜଗ ଯେତେ, ପୋଛା ସେତେ) | |
| ମୋଟୀ | ପାତଳୀ |
| ବାଟ | ଅବାଟ |
| ଜଣା | ଅଜଣା |
| ସ୍ଥିର | ଅସ୍ଥିର |
| ଶାନ୍ତ | ଅଶାନ୍ତ |
| ଫୁଟା | ଅଫୁଟା (ପାଣି) |
| ସାର | ଅସାର |
| ପାଠୁଆ | ଅପାଠୁଆ |
| ବେଳ | ଅବେଳ |
| ସିଖା | ଅସିଖା |

| | |
|---|---|
| ଗଜ | ଅଗଜ |
| ବୁଝା | ଅବୁଝା |
| (ଅବୁଝା ରଜାକୁ ପାଳଖଣ୍ଡା ମନ୍ତ୍ରୀ) | |
| ନ୍ୟାୟ | ଅନ୍ୟାୟ |
| ଧୂଆ | ଅଧୂଆ (ମୂଳା) |
| ଢଙ୍କା | ଅଢଙ୍କା |
| ଫଳନ୍ତ | ଅଫଳନ୍ତ (ଗଛ) |
| ଗାଧୁଆ | ଅଗାଧୁଆ |
| ଜାଏର | ଅଜାଏର (ଜମି) |
| ଚଞ୍ଛା | ଅଚଞ୍ଛା (କାହିଁଶ) |
| ଛୁଆଁ | ଅଛୁଆଁ |
| ପାଠୋଇ | ଅପାଠୋଇ |
| ସ୍ଥାୟୀ | ଅସ୍ଥାୟୀ |
| ଜୀର୍ଣ୍ଣ | ଅଜୀର୍ଣ୍ଣ |
| ଦରକାରୀ | ଅଦରକାରୀ |
| ଶୁଦ୍ଧ | ଅଶୁଦ୍ଧ |
| ମଙ୍ଗଳ | ଅମଙ୍ଗଳ |
| ବାଧ | ଅବାଧ |
| ସୁବିଧା | ଅସୁବିଧା |
| ସାବଧାନ | ଅସାବଧାନ |
| ଚେତା | ଅଚେତା |
| ସୁସ୍ଥ | ଅସୁସ୍ଥ |
| ଭେକ | ଅଭେକ |
| ( ଭେକ ଥିଲେ ଭିକ ମିଳେ ) | |

| | |
|---|---|
| ଶିଷ୍ଟାଚାର | ଅଶିଷ୍ଟାଚାର |
| ଲୁଣି | ଅଲଣା |
| | (ଅଲଣା କଥା) |
| ପୂର୍ଣ୍ଣ | ଅପୂର୍ଣ୍ଣ |
| ଧର୍ମ | ଅଧର୍ମ |
| (ଅଧର୍ମ ବିତ୍ତ, ବଢ଼େ ବହୁତ) | |
| ପାଣିଆ | ଅପାଣିଆ<br>ନିପାଣିଆ |
| ସୁଖ | ଅସୁଖ |
| ଉପଯୋଗୀ | ଅନୁପଯୋଗୀ<br>ଅବାନ୍ତର |
| ବିବାହିତ | ଅବିବାହିତ |
| ଉପଯୁକ୍ତ | ଅନୁପଯୁକ୍ତ |
| କାଚ (କାଚେ ପାଣି) | ଅକାଚ |
| ଚଳ | ଅଚଳ |
| ଆଦି | ଅନାଦି |
| ମାପ | ଅମାପ |
| ଶେଷ | ଅଶେଷ |
| ଅନ୍ତ | ଅନନ୍ତ |
| ଖିଆ | ଅଖିଆ |
| ଖାଦ୍ୟ | ଅଖାଦ୍ୟ |
| ଘରବାସୀ | ଅଘରବାସୀ |
| ସଭ୍ୟ | ଅସଭ୍ୟ |
| ଜନ୍ମ | ଅଜନ୍ମ |

| | |
|---|---|
| ପରିଷ୍କାର | ଅପରିଷ୍କାର |
| କାଳ | ଅକାଳ |
| (ତାଙ୍କର କାଳ ହେଲା, | ଅକାଳ ମୃତ୍ୟୁ) |
| ବଣ୍ଠା | ଅବଣ୍ଠା |
| (ଚାଉଳ ବା ବେସର ବଣ୍ଠା) | |
| ସମ୍ଭବ | ଅସମ୍ଭବ |
| ଥୟ | ଅଥୟ |
| ସମ୍ଭାଳ | ଅସମ୍ଭାଳ |
| ଯୋଗ୍ୟ | ଅଯୋଗ୍ୟ |
| ସହଯୋଗ | ଅସହଯୋଗ |
| ଜାତି | ଅଜାତି |
| (ଅଜାତିକୁ ବଣିଜ ଅଡୁଆ) | |
| ସୁ | କୁ |
| ସୁପୁତ୍ର | କୁପୁତ୍ର |
| ସୁଫଳ | କୁଫଳ |
| ସୁମେରୁ | କୁମେରୁ |
| ସୁପୁରୁଷ | କୁପୁରୁଷ<br>କାପୁରୁଷ |
| ସୁନାମ | ଦୁର୍ନାମ |
| ଆବଶ୍ୟକ | ଅନାବଶ୍ୟକ |
| ଆଦର | ଅନାଦର |

| | |
|---|---|
| ଆଦର | ଅନାଦର, ହତାଦର |
| ଆପୃତ୍ତ | ଅଣାପୃତ୍ତ, ନପୃାନ୍ତ |
| ହଳଦିଆ | ଅଣହଳଦିଆ |
| ବାପୁଆ | ଅଣବାପୁଆ |
| ଉପସ୍ଥିତ | ଅନୁପସ୍ଥିତ |
| ଉଚିତ | ଅନୁଚିତ |
| ହିସାବୀ | ବେହିସାବୀ |
| ହୋସ୍ | ବେହୋସ୍ |
| ଦମ୍ | ବେଦମ୍ |
| ସବୁର | ବେସବୁର |

(ସବୁର୍ ଗଛରେ ମେଓଆ ଫଳେ)

| | |
|---|---|
| ସୁନାମ | ବଦନାମ |
| ସଦଭ୍ୟାସ | ବଦଭ୍ୟାସ |
| ଧଡ଼କ | ବେଧଡ଼କ |
| ଦାନ୍ତ (ହାଣ୍ଡି) | ବେଦାନ୍ତ, ପାଲୁଆ (ପାଟି) |
| ଆମିଷ | ନିରାମିଷ |
| ଥିଲି | ନଥିଲି |
| ଖାଇଲି | ନ ଖାଇଲି |

(ଖାଇଲି ପୁଅ ରଙ୍କ ନାଁ ନ ଖାଇଲି ପୁଅ ରଙ୍କ)

| | |
|---|---|
| ମାପୁାବୀ | ନିର୍ମାପୁା |
| ହାକର | ଟରହାକର |
| ସୁଗନ୍ଧ | ଦୁର୍ଗନ୍ଧ |
| ଘୁଞ୍ଚିବା | ଧରିବା |
| ଉଇଁବା | ବୁଡ଼ିବା |
| ମଲି | ଗାଇଁଲି |

[ହାତୀ ମଲେ ଲକ୍ଷେ ଟଙ୍କା, ଗାଇଁଲେ ଲକ୍ଷେ ଟଙ୍କା ]

| | |
|---|---|
| କାନ୍ଦ | ହସ |
| ଶୋଇବା | ଚେଇଁବା |
| ବସା | ଉଠା |
| ଦେବା | ନେବା |
| ମାରିବା | ଛାଡ଼ିବା |
| ହଜିବା | ମିଳିବା |
| ପଳାଇବା | ଗୋଡ଼ାଇବା |
| ଜଳିବା | ଲିଭିବା |
| ଫୁଟିଲି | ମଉଳିଲି (ଫୁଲ) |
| ଜଳନ୍ତା | ଲିଭିଲି |
| ଉଠ | ପଡ଼ |
| ହାରିବା | ଜିଣିବା, ଜିତିବା |

ବସ ଖସ (ଖୁଲିପିବା ଅର୍ଥରେ)
( ବସ ନୋହିଲେ ଖସ )

| | |
|---|---|
| ବାସିବା | ଗନ୍ଧାଇବା |
| ଟେକିବା | ଫିକାଇଦେବା |
| ଭସିଲି | ବୁଡ଼ିଲି |

(ଭସିଲି ପଥର ବୁଡ଼ିଲି ସୋଲ)

କଣା — ବଳା
ଆଇଲ — ଗଲ
(ଆଇଲ ଗଲ ଲୋକଙ୍କ
କଥା ବୁଝିବ କଏ ?)
ମେଲିବା } ବୁଜିବା
ଖୋଲିବା }
(ଆଖି ବୁଜିଲେ ଦଣ୍ଦଗ ଅନ୍ଧାର)

ସାଇତିବା — ଉଜାଡ଼ିବା (ଧନ)
ଓହ୍ଲେଇବା — ଚଢ଼େଇବା
ବାଟ ଓଗାଳିବା — ବାଟ ଛାଡ଼ି-ଦେବା
ଓହ୍ଲେଇବା — ଚଢ଼ିବା

## —ଯୁଗ୍ମଶବ୍ଦ—

୧ । ବିପରୀତାର୍ଥ ଦୁଇଟି ଶବ୍ଦରେ—

| | | |
|---|---|---|
| ଅଗମୂଳ | ଦିଆନିଆ | ବଳାକଣା |
| ଆଗପଛ | ଦିନରାତି | ବେଳଅବେଳ |
| ଆତଯାତ (ଯାଆସ) | ଦୁଃଖସୁଖ | ଭଲମନ୍ଦ |
| ଆକାଶପାତାଳ | ଧୂଆଅଧୂଆ | ରଜାପ୍ରଜା |
| ଆୟବ୍ୟୟ | ଧୋଇମରୁଡ଼ | ଲୁଣିଅଲଣା |
| ଉଚ୍ଚନୀଚ | ନିଜପର | ସୁଖଦୁଃଖ |
| ଊଣାଅଧିକ | ପରଆପଣା | ହାନିଲାଭ |
| ଧଳାକଳା | ପାପପୁଣ୍ୟ | ଛୁଆଁଛୁତ |
| ଖାଲଢିପ | ଫଳାଫଳ | ସ୍ବାଦୁସ୍ବାଦୁ |
| ଜଳସ୍ଥଳ | ବାଟଅବାଟ | |
| ଦୋଷଗୁଣ | ବଡ଼ସାନ | |

୨ । ଆପେକ୍ଷିକ ଦୁଇଟି ଶବ୍ଦରେ—

| | | | |
|---|---|---|---|
| ଆଧିବ୍ୟାଧି | ଖୋଜଖବର | ତର୍କବିତର୍କ | ନାମଧାମ |
| ଓଷାଉଆଁସ | ଖିଆ ପିଆ | ଅଳକ୍ଲ | ନଷ୍ଟକ୍ଷଷ୍ଟ |

| | | | |
|---|---|---|---|
| କଥାବାର୍ତ୍ତା | ଗୋରୁଗାଈ | ଅଟ୍ଟାଳିମହଲା | ପୂଜାପର୍ବ |
| କାମଦାମ | ଘରଦ୍ୱାର | ଦେହମୁଣ୍ଡ | ଲୋକଜୋକ |
| ଲୁଆକୁକୁର | ବୃଷବାସ | ଦାନଧ୍ୟାନ | ପାଖପଡ଼ଶା |
| କାନ୍ଥକୁଣ୍ଡିଆ | ଜାତିଗୋତ୍ର | ଦୁଃଖୀରଙ୍କି | ପାଠଶାଠ |
| କାଠକୁଟା | ଝାଟିମାଟି | ଧନଜନ | ଫନ୍ଦଫିକର |
| କନାକତର | ଭୂତପ୍ରେତ | ଧନଧାନ୍ୟ | ବାସନକୁସନ |
| ପଡ଼ାଶୁଣା | ଜଗାରଖା | ଦୟାମାୟା | ବେଶଭୂଷା |
| ବୁଝାସୁଝା | ହାଇଭଗାଣ | ମାଲମସଲା | ହାତହତିଆର |
| ବଳବୟସ | ଭୟଭ୍ରାନ୍ତ | ଲୁଗାପଟା | ସୁଖଶାନ୍ତ |
| ଧରପଗଡ଼ | ଭଙ୍ଗାଦଦରା | ଲେଖାପଢ଼ା | ହଲଚଲ |
| ବନ୍ଧପଥ | ଶୋକଶୋଷ | ଲେଖାଯୋଖା | ହାଲଚାଲ |
| ଶାକସବ୍‌ଜି | ମାୟାମମତା | ବାଲିବଗୁର | ହାଟବାଟ |
| ଶାଗମୁଗ | ସାଙ୍ଗସୁଖ | ହାଣ୍ଡିଦୋଡ଼ା | ଖତମାତ |
| ସାଇପଡ଼ଶା | ସେବାଶୁଶ୍ରୂଷା | | |

୩ । ଗୋଟିଏ ଅର୍ଥହୀନ ଦୁଇଟି ଶବ୍ଦରେ—

| | | |
|---|---|---|
| ଆଶପାଶ | ଛୁଆଁଛୁତ | ଚାକଚରକ |
| ଆଖପାଖ | ଛଟପଟ | ଥରହର |
| ଆବାକାବା | ଜନ୍ତୁଜନ୍ତା | ପିଲ୍ଲକବଲ୍ଲ |
| ଖର୍ଚ୍ଚବାର୍ଚ୍ଚ | ଝଟଝାଟ | ପିଲ୍ଲଝିଲ୍ଲ, ପିଲ୍ଲପିଚକା |
| ଗାଳିଗୁଲଜ | ଠୋକାଠାକର | ପେଟପାଟଣା |
| ଗାଁଗଣ୍ଡା | ଟିକ୍‌ଠାକ୍ | ଫେରଫାର |

| | | |
|---|---|---|
| ଗାଧୁଆ ପାଧୁଆ | ଉଦଳ ବଦଳ | ବାଣ୍ଟ ଭୁଣ୍ଟ |
| ଗପ ସପ | ଡାକ ହାକ | ମୋଟା ସୋଟା |
| ମାପ ଚୁପ | ଢଙ୍ଗ ଢାଙ୍ଗ | ମାଲ୍ ମଢା |
| ହଠ ଚମଠ | ମୂଲ୍ ପାଣ୍ଡି | ଶୁନ ଶାନ |
| ଭେଗ ଭଗ | ଭକ ଫିକ | ହାଟ ପାଟଣା |

୪ । ଏକ ଅର୍ଥର ଆପେକ୍ଷିକ ଶବ୍ଦରେ—

| | | |
|---|---|---|
| ଅସୁଖ ବିସୁଖ | ଗୁଲ ଚଲଣ | ବଣ ଜଙ୍ଗଲ |
| ଆମୋଦ ପ୍ରମୋଦ | ଚହଟ ଚିକ୍‌କଣ | ବନ୍ଧୁବାନ୍ଧବ |
| ଆଚ୍ଛର ବ୍ୟବହାର | ଜୋର ଜୁଲମ | ବାଧା ବିଘ୍ନ |
| ଆଶା ଭରସା | ଜୀବଜନ୍ତୁ | ମଣିମାଣିକ |
| ଓଜର ଆପତ୍ତି | ଗର୍ଜ୍ଜନ ତର୍ଜ୍ଜନ | ବେପାର ବଣିଜ |
| କଳକଜିଆ | ଟଙ୍କା କଉଡ଼ି | ଦଙ୍ଗାହଙ୍ଗାମ |
| କଳ ଚକଗଳ | ଦୀନଦୁଃଖୀ | ଦଉଡ଼ଧାପଡ଼ |
| କୂଳ କିନାର | ଧାଁ ଦଉଡ଼ | ଧନରତ୍ନ |
| କୁହାବୋଲ | ନ୍ୟାୟ ନିଶାପ | ଧାର ଉଧାର |
| ଘଷା ମଜା | ପାଟି ତୁଣ୍ଡ | ଧୋବଧାଉଳିଆ |
| ଯାନବାହନ | ଘେଠାବଗଡ଼ା | ବଣବୁଦା |
| ସୋରଶବ୍‌ଦ | ସଫାସୁତୁରା | ବେଳକାଳ |
| ସୁଖଶାନ୍ତି | ସଙ୍ଗ ସଙ୍ଗାତ | ରଙ୍ଗଢଙ୍ଗ |
| ରଙ୍ଗ ରସ | ସଙ୍କୁଳାସଙ୍କୁଳ | ରଙ୍ଗରହସ୍ୟ |

୫ । ପୁନରୁକ୍ତିରେ—

(କ) କ୍ରିୟାରେ—

ଆସୁଆସୁ  
କହୁଁ କହୁଁ  
କାନ୍ଦକାନ୍ଦ  
ଖାଇଖାଇ  
ଘୂରୁଁ ଘୂରୁଁ  
ଜାଣୁଜାଣୁ  
ଭଲଭଲ

(ଖ) କୁନ୍ଦାକୁନ୍ଦି  
କଟାକଟି  
ଗଡ଼ାଗଡ଼ି  
ଠେଲାଠେଲି  
ଦଣାଦଣି  
ମରାମରି  
ଭେଟାଭେଟି  
ଛନ୍ଦାଛନ୍ଦି  
ଛକାଛକି  
ଝିଙ୍କାଝିଙ୍କି  
ଟଣାଟଣି  
ବୁଲାବୁଲି  
ମୁହାଁମୁହିଁ  
ଲେଖାଲେଖି  
ଦେଖାଦେଖି  
ଧରାଧରି  
ପିଟାପିଟି  
ଫଟାଫଟି  
ପଡ଼ାପଡ଼ି  
ମରାମରି

(ଗ) ବିଶେଷଣ ବା କ୍ରିୟାବିଶେଷଣରେ—

କାନ୍ଦକାନ୍ଦ  
ଘନଘନ  
ଟଳଟଳ  
ଡରଡର  
ଢଳଢଳ  
କଟିକଟି  
ବାରମ୍ବାର  
ଟାଣଟାଣ  
ଛନଛନ  
ଖପଖପ  
କେଡ଼େ କେଡ଼େ  
ଅଳ୍ପ ଅଳ୍ପ  
ଧୀରେ ଧୀରେ  
ଢସଢସ

ବଲବଲ | ଢଳଢଳ
ଫରଫର | ଚୁଟ୍‌ଚୁଟ୍
ମୁସ୍‌ମୁସ୍

(ଘ) ସର୍ବନାମ, ଅବ୍ୟୟରେ—

କେବେ କେବେ | କେଉଁ କେଉଁ | ଯିଏଯାହା
ହାହା | ଛିଛି | ଅନ୍ୟାନ୍ୟ

(ଙ) ଧ୍ୱନରେ—

କଟକଟ | ଠେଁଠେଁ | ଠୋଠୋ
କୁତୁକୁତୁ | ଚଡ଼୍‌ଚଡ଼୍ | ଛାଉଁଛାଉଁ
ଖଡ଼୍‌ଖଡ଼୍ | ଟଂଟଂ | ଦୁମ୍‌ଦୁମ୍
ଗୁଣୁଗୁଣୁ | ଜକ୍‌ଜକ୍ | ଧକ୍‌ଧକ୍
ଘଡ଼ଘଡ଼ | ଝଣ୍‌ଝଣ୍ | ପାଲୁପାଲୁ
ଘୁଘୁ | ଝମ୍‌ଝମ୍ | ଭଡ଼୍‌ଭଡ଼୍
ଗଁଗଁ | ଝାଇଁଝାଇଁ | ଭଣଭଣ
ଗରଗର | ଝଟପଟ | ଭୁସ୍‌ଭୁସ୍
ମଟମଟ | ଠଣଠଣ୍ | ମୁଷମୁଷ
ସୁସୁ | ମ୍ୟାଉଁମ୍ୟାଉଁ | ସେଁସେଁ
ସାଇଁସାଇଁ | ହ ହ

(ଚ) ପ୍ରାୟ ସମାନ ଅର୍ଥରେ—

ଅଧାଅଧି | ମଝାମଝି
ଥରେଅଧେ | ପୂରାପୂର
ମୁଣ୍ଡାମୁଣ୍ଡି

୬ । ସମୂହ ଅର୍ଥରେ—

| | | |
|---|---|---|
| କରଣଜାଳ | ଦ୍ରୁମାବଳୀ | ପାରିଷଦବର୍ଗ |
| ଗୁଣଗ୍ରାମ | ଦସ୍ୟୁଦଳ | ବୀରବୃନ୍ଦ |
| ଗହଣାଗାଣ୍ଠି | ନକ୍ଷତ୍ରପୁଞ୍ଜ | ବନରାଜି |
| ଜନସଂଘ | ପଣ୍ଡିତମଣ୍ଡଳୀ | ପଦାବଳୀ |
| ଜଳରାଶି | ପ୍ରସ୍ତରସ୍ତୂପ | ମୃଗଯୂଥ |
| ଛାଳ ବଣିଆ | ବାଳକଗଣ | ଯଶୋରାଶି |
| ନଡ଼ିଆ ଗୋରଡ଼ା | ଆମ୍ବତୋଟା | |

୭ । ଗାଉଁଲି ଭାଷାରେ—

| | | |
|---|---|---|
| କଦଳୀ କାନ୍ଧ | ପଦ୍ମକୁଡ଼ | ସୂତାକେରା |
| କଦଳୀ ଫେଣା | ଫୁଲ ପେନ୍ଥା | ଶାଗବେକା |
| କାଦୁଅମେଞ୍ଚା | ଧାନଭରଣ | ଧୂଆଁ ପଙ୍କମେଞ୍ଚା |
| ଗୋରୁପଲ | ପାଲଗଦା | ବାଲିକୁଦ |
| ଗୁଆଗାଛ | ନଡ଼ିଆପେଣ୍ଡା | ମଇଁଷିପେଣ୍ଡା |
| ବାସକେରା | ନଡ଼ିଆମାଳ | |

## ସଂଖ୍ୟା ବା ପରମାଣସୂଚକ ଶବ୍ଦ

| | | |
|---|---|---|
| ଅଙ୍କାଏ ପଣସ | ଧଣ୍ଡାଏ ଆଖୁ | ମୂର୍ତ୍ତିଏ ବ୍ରାହ୍ମଣ |
| ଅସରାଏ ବର୍ଷା | ପାଟଯୋଡ଼ | ମୁଣ୍ଡାଏ ଖଇ |
| କାନ୍ଧାଏ କଦଳୀ | ଫେଣାଏ କଦଳୀ | ମୁଠେ ଶୃଙ୍ଖଳ |
| କଡ଼ାଏ ପାନ | ଫୁଟେ ପଣସ | ମୁଠାଏ ଚାଉଳ |

| | | |
|---|---|---|
| ଗୋଟେ ଗୋରୁ | ପଲେ ଛେଳି | ଜାଉଁଳ କବାଟ |
| ଘରେ ହାଞ୍ଚ | ପଦେ କଥା | ଯାଆଁଳା ପିଲା |
| ଦାଣ୍ଡିଏ ଘର | ଫଡ଼େ ପିଠା | ଯୋଡ଼ ନାଗରା |
| ଦଲକାଏ କାନ୍ଥ | ଫେଣେ କଦଳୀ | ହଟାଏ ଚକଟା |
| ଦୁଏ କାନ୍ଥ | କଂସାଏ ପଖାଳ | ହଳେ ବଳଦ |
| ପାଗେ ହାଣ୍ଡି | କାଡେ ପାଣି | ହାଣ୍ଡିଏ ଭାତ |
| ପୁରୁଷେ ପାଣି | କୁଲେ କମଳା | ସାଜେ ବାସନ |
| ବାନ୍ଧଏ କାଚ | ଗୁହାଳେ ଗୋରୁ | ସାରେ ଅଳଙ୍କାର |
| ପଟେ କାଚ | ଥାନେ ଅଳଙ୍କାର | ସଂଧାଡ଼ିଏ ପଇଚା |
| ବଡ଼ାଏ କାଠ | ଥାନେ ଲୁଗା | ଶଗଡ଼େ କାଠ |
| ଟେଳାଏ ମାଟି | ପୁଳାଏ ମାଂସ | ମଦାଏ ପାଣି |
| ଡାକେ ବାଟ | ପାନେ ଔଷଧ | ମାଠିଏ ପାଣି |
| ଢାଳେ ପାଣି | ଘରେ ଆମ୍ବ | କରଚୁଲିଏ ଡାଲି |
| ଓଡ଼େ ଋଷ | ଭେଳାଏ କାଠ | ଗୋଛାଏ କାଠ |
| କଡ଼ାଏ କଉଡ଼ି | ଭରିଏ ସୁନା | ପୁଳାଏ ଘାସ |
| ଖିଏ ସୂତା | ମୂର୍ତ୍ତିଏ ବାସନ | ଚଳୁଏ ପାଣି |
| ଗୁଣ୍ଡାଏ ଭାତ | ମୂର୍ତ୍ତିଏ ଠାକୁର | ପଲେ ଗାଈ |
| ଦଳେ ଚୋର | ମୂର୍ତ୍ତିଏ ମହାପ୍ରସାଦ | ଦାନ୍ତଏ କଳେଇ |
| ମାଡ଼ିଏ ଦାନ୍ତ | ଛନେ ସୁନା | କେଣ୍ଡାଏ ଧାନ |
| ଖଣ୍ଡଏ ଚୂଡ଼ା | ଧାନେ ଅଫିମ | ଲେନ୍ଥାଏ ପତ୍ର, ଗୁବ |
| ଥୋଲ୍ଲଏ ରୁଦ୍ର | ବେକେ ଶାଗ | କେରାଏ ଶାଗ |
| ଫୁଟେ ତେନ୍ତୁଳି | ଟିପେ ନାସ | |

ସାମାନ୍ୟ ଅର୍ଥରେ—

| | |
|---|---|
| କାଣି କଉଡ଼ି | ଝୁସି କଲରା |
| କୁଜ ଅପରପା | ଝୁଙ୍ଗି ଘର |
| କୁଜ ଗେଣ୍ଡା | ଠୁସି କଙ୍କଡ଼ା |
| କୁଜ ହଂସ | ବାଳ ଧୂପ |
| ଗୁନ (ଭୁସି) ଟଙ୍କୁଡ଼ି | ବାଳଭୋଗ |
| ଗୁଣ୍ଡୁଣୀହାଣ୍ଡି | ବାଲ ହରଡ଼ା |
| ଚୂନା ମାଛ | ଜଙ୍ଗି ହରିଡ଼ା |
| ଫୂଲକଡ଼ି | |

## ବିଭିନ୍ନାର୍ଥ ବୋଧକ ସମ-ଶବ୍ଦପୁଞ୍ଜ

ଅନ୍ଧାର କଣା—ଯେ ରାତିରେ ଦେଖିପାରେ ନାହିଁ ।

ଅନ୍ଧାର ରାତି—ଜହ୍ନ ଦେଖାଯାଉ ନ ଥିବା ରାତି ।

ଅନ୍ଧାର ଶୀକୁଳ—ଏକପ୍ରକାର ଚର୍ମରୋଗ ।

ଅନ୍ଧାର ମୂଲକ—ନ୍ୟାୟ ବିଚାର ନ ଥିବା ଦେଶ ।

ଅନ୍ଧାର ବିଜେ - ରାଜାଙ୍କର ଲୁଚି କରି ଘର ବୁଲି ଦେଖିବା ।

ଅଷାଢ଼ୁଆ ସୂତା—ବିବାହ ଦିନ ବର ଓ କନ୍ୟାଙ୍କ ହାତରେ ବନ୍ଧା ହୋଇଥିବା ହଳଦିଆ ସୂତା ।

ଅଷାଢ଼ୁଆ ମେଘ—କଳା ମେଘ ( ସାଧାରଣତଃ ଆଷାଢ଼ ମାସରେ ଦେଖାଯାଏ । )

ଅଷାଢ଼ୁଆ ଫଳ—ଏକ ପ୍ରକାର ବଣୁଆ ଫଳ ।

ଅନନ୍ତ ବ୍ରତ—ଭାଦ୍ର ମାସ ଶୁକ୍ଳ ଚତୁର୍ଦ୍ଦଶୀରେ ପାଳିତ ବ୍ରତ ।

ଅନନ୍ତ ମୂଳ — ଚେମେଣିଲଇ ମୂଳ ।

ଅଜ୍ଞାନ କୃତ — ନ ଜାଣି ଯାହା କରାଯାଇଥାଏ ।

ଅଜ୍ଞାନ ଗୁଣ୍ଡା—ଯେଉଁ ଗୁଣ୍ଡା ଦ୍ୱାରା ଜ୍ଞାନ ହରିଯାଏ ।

ଅଟାଚଲ—ଚୂନ ଅଟାକୁ ଛାଣିବା ଛାଲୁଣୀ ।

ଅଟାପେଷା—ଗହମ ବା ଚାଉଳକୁ ପେଷିବା କାମ ।

ଅଠାକାଠି—ପକ୍ଷୀ ଧରିବା ପାଇଁ ଅଠାଯୁକ୍ତ କାଠି ।

ଅଠାଠିକ—ମରଣାନ୍ତକ ଅବସ୍ଥା ।

ଅଣଉଦିଆ—ସୂର୍ଯ୍ୟ ଉଦୟରୁ ପୂର୍ବରୁ ।

ଅଣକଦଳିଆ—ଯେଉଁ କଦଳୀ ଗଛରେ ପୁଆ ବେଶୀ ହୋଇ ଫଳ ଫଳେ ନାହିଁ ।

ଅଣକଳା—ଶଗଡ଼ ଚକକୁ ଅଟକାଇବା ଖିଲ ।

ଅଣପୁରୁଷା—ନପୁଂସକ ।

ଅଣବାବୁଆ- ଯାହାର ବାପର ଠିକଣା ନ ଥାଏ ।

ଅଣଚୁଷ ପବନ—ମରିବାର କିଛି ସମୟ ପୂର୍ବରୁ ଊର୍ଦ୍ଧ୍ୱଶ୍ୱାସ ।

ଅଣସର—ଦେବସ୍ନାନ ପୂର୍ଣ୍ଣିମା ପରବର୍ତ୍ତୀ ପନ୍ଦର ଦିନ ।

ଅଣ୍ଟାଗୁଣ୍ଡା—ଲଙ୍ଗ ।

ଅଣ୍ଟାପାଣି—ଅଣ୍ଟାଠାରୁ ତଳକୁ ଧୋଇବା

ଅଣ୍ଟାଧରା—କଟି ବାତ ।

ଅନ୍ତୁଡ଼ିଶାଳ—ପ୍ରସୂତି ଗୃହ ।

ଅନ୍ତୁଡ଼ି ଛୁଆ - ନବଜାତ ଶିଶୁ ।

ଆଣ୍ଠୁ ଗଣ୍ଠି ବାତ—ଆମବାତ ।

ଆଣ୍ଠୁ କୁଡ଼ା—ଅପତ୍ୟହୀନ ।

ଉତ୍ତର ଦିଗ—ଦିଗ ବିଶେଷ ।

ଉତ୍ତର କାଳ—ଶେଷ ସମୟ ।

ଉତ୍ତରଧିକାରୀ—ଦାୟାଦ ।

କୁଆଚୁଆ – ବାରମ୍ବାର ଭୀଷଣ ଆଘାତରେ ବ୍ୟତିବ୍ୟସ୍ତ ।

କୁଆଚଗ୍ର – ପାହାନ୍ତିଆ ଚଗ୍ର ।

କୁଆପଥର – କରକା ।

କଳିଯୁଗ – ଗୃତ୍ୟୁଗରୁ ଚତୁର୍ଥ ଯୁଗ ।

କଳିଗୋଳ – ଗୋଳମାଳ ଓ କଳହ ।

କୁମ୍ଭମେଳା – ବୃହସ୍ପତିର କୁମ୍ଭରାଶିକୁ ଚଳନର ପ୍ରଥମ ଦିବସରେ ହରିଦ୍ୱାରଠାରେ ଅନୁଷ୍ଠିତ ବିରାଟ ମେଳା ।

କୁମ୍ଭକର୍ଣ୍ଣ – ରାବଣର ଭାଇ ।

ଭୂତକେଳି – ଭୂତମାନଙ୍କର ଖେଳ ।

ନାବକେଳି – ନଦୀରେ ନୌକାକ୍ରୀଡ଼ା ।

ମାଛ କଣ୍ଟା – ମାଛର କଣ୍ଟା ।

କୂଅ କଣ୍ଟା – କୂଅରେ ପଡ଼ିଥିବା ଜିନିଷ ଉଦ୍ଧାର ପାଇଁ ଯନ୍ତ୍ର ।

ବାଉଁଶ କଣ୍ଟା – ବାଉଁଶ ଗଛର କଣ୍ଟା ।

କଞ୍ଚା ମିଛ – ନାହାଁ ମିଛ ।

କଞ୍ଚା ଆମ୍ବ – ପାଚି ନ ଥିବା ଆମ୍ବ ।

କଞ୍ଚା ହାଣ୍ଡି – ପୋଡ଼ା ଯାଇ ନ ଥିବା ହାଣ୍ଡି ।

କଞ୍ଚା ପରିବା – ସଜ ଓ ସବୁଜ ପରିବା ।

କଞ୍ଚା ମାଲ – ଯେଉଁ ମୌଳିକ ବସ୍ତୁରୁ ବ୍ୟବହାରୋପଯୋଗୀ ଦ୍ରବ୍ୟ ପ୍ରସ୍ତୁତ ହୁଏ ।

କଞ୍ଚା କଉଡ଼ି (ପଇସା) – ବିନାଶ୍ରମରେ ଲବ୍ଧ ବହୁ ଅର୍ଥ ।
(କଞ୍ଚା କଉଡ଼ି ପଖାଳ ଭାତ) ।

ତଣ୍ଟିକଟା – ବିଶ୍ୱାସଘାତକ ।

ହାତକଟା – ହାତରେ କଟାଯାଇଥିବା, ହାତ କଟିଥିବା ।

ଆଖି ଖାଇ – ଆଖିପେଡ଼ା କଳି ।

କପା ଖାଇ—କପାରୁ ମଞ୍ଜି କାଢ଼ିବା ଯନ୍ତ୍ର ।
ଗୁଆଘିଅ—ଗାଈ ଘିଅ ।
ଗୁଆକାତି—ଗୁଆ କାଟିବା ଯନ୍ତ୍ର ।
ଗୋଟିପୋକ—ପାଟ ବା ଟସର ପୋକ ।
ଗୋଟିପୁଅ—ନାଟୁଆ ପିଲା ।
ଗୁରୁଜନ—ବୟସରେ ବଡ଼ ଲୋକ ।
ଗୁରୁ ଧାନ—ଯେଉଁ ଧାନ ଡେରିରେ ପାଚେ ।
ଗୋଠଖଣ୍ଡିଆ—ଦଳଛଡ଼ା ।
ଗୋଠ ଲଙ୍କା—ଏକ ସମୟରେ ବହୁତ ଫଳୁଥିବା ଏକପ୍ରକାର ଲଙ୍କା ।
ଗରମ ପୋଷାକ—ପଶମ ତିଆରି ପୋଷାକ ।
ଗରମ ଭାତ—ପଖାଳ ହୋଇ ନ ଥିବା ଭାତ ।
ଗରମ ଦିନ—ଗ୍ରୀଷ୍ମକାଳ ।
ଗରମ ମସଲା—ଡାଲଚିନି, ଗୁଜୁରାତି ଆଦି ।
ଗରମ ପାଣି—ତାତଲା ପାଣି ।
ଘିଅକୁଆଁରି—ଗୁଳ୍ମ ବିଶେଷ ।
ଘିଅଭାତ—ଘିଅମିଶା ଭାତ, ମୃତାହନିୟାରେ ଏକାଦଶ ଦିବସର ଭାତ ।
ଘରକରଣା—ଗୃହସ୍ଥ ଧର୍ମ ।
ଘରଚଟିଆ—ପକ୍ଷୀ ବିଶେଷ ।
ଚନ୍ଦନଚିତା—କପାଳରେ ଚନ୍ଦନ ଲଗାଇବା ।
ଚିତାଭସ୍ମ—ଶବ ଦାହର ପାଉଁଶ ।
ଚିତା କଟା—ଠକ ।
ଚିତାକୁଟା—ଶରୀରର ଅଙ୍ଗପ୍ରତ୍ୟଙ୍ଗରେ କଣ୍ଟା ସାହାଯ୍ୟରେ ଚିହ୍ନ କରିବା ।

ଶଡ଼ା ବାଘ—କଲବଗ୍ର ପଡ଼ିଆ ବାଘ ।
ଗ୍ଲେଟ୍ ମାଛ—ଆକାରରେ ସାନ ମାଛ ।
ଗ୍ଲେଟ୍ ଜାଡ—ନୀଚ ଜାଡ ।
ଗ୍ଲେଟ୍ ନଦୀ—ଲମ୍ବ ବା ଓସାରରେ ସାନ ।
ଗ୍ଲେଟ୍ ଧାନ—ଲଘୁଧାନ ।
ଗ୍ଲେଟ୍ ଛୁଆ—ବୟସରେ ସାନ ପିଲା ।
ଗ୍ଲେଟ୍ ଦିନ—ଦିବାଭାଗ ବାର ଘଣ୍ଟାରୁ କମ୍ ହେଲେ ।
ଜଳକର—ଜମିରେ ପାଣି ମଡ଼ାଇବା ପାଇଁ ଖଜଣା ।
ଜଳକେଳି—ପହଁରିବା, ନୌକା ଚଳାଇବା ଆଦି ଜଳକ୍ରୀଡ଼ା ।
ଜଳଛବି—ପାଣି ସାହାଯ୍ୟରେ ଯେଉଁ ଚିତ୍ରକୁ ଖଣ୍ଡିଏ କାଗଜରୁ
ଅନ୍ୟ କାଗଜ ଉପରକୁ ନିଆଯାଏ ।
ଜଳଖିଆ—ଲଘୁ ଖାଦ୍ୟ ।
ଜଳଜମି—ଧାନ ଚାଷ ଜମି ।
ଜଳଚର—ଜଳରେ ବାସ କରିବା ପ୍ରାଣୀ ।
ଝଡ଼ପାଗ—ସବୁବେଳେ ଝିପି ଝିପି ବର୍ଷୁଥିବା ପାଗ ।
ଝଡ଼ ପୋକ—ପକ୍ଷୀ ଲାଗିଥିବା ଉଇ ।
ଭୁଣ୍ଡପୋଡ଼ା—ଏକପ୍ରକାର ବନ୍ୟ ଗୁଳ୍ମ ।
ଭୁଣ୍ଡ ବାଇଦ—ଜନରବ ।
ଭୁଣ୍ଡ ସୁଆଦ—ପାଟିକୁ ଭଲ ।
ଦେହ ବନ୍ଧା—ମନ୍ତ୍ର ସାହାଯ୍ୟରେ ଦେହକୁ ନିରାପଦ ରଖିବା ।
ଦେହ ଥରା—ଏକ ପ୍ରକାର ରୋଗ ଲକ୍ଷଣ ।
ଆକାଶଦୀପ—କାର୍ତ୍ତିକ ପୂର୍ଣ୍ଣିମାରେ ଉତ୍ତୋଳିତ ଦୀପ ।
ମହାଦୀପ—ଶିବରାତ୍ରିରେ ପ୍ରାୟ ଅଧରାତରେ ମନ୍ଦିର ଚୂଡ଼ାକୁ
ନିଆଯିବା ଦୀପ ।

ପାପଦଣ୍ଡି—ପୋଖରୀ ମଝିର ଶ୍ରେଷ୍ଠ ଦେଉଳ ।
ପର କଲମ—ପକ୍ଷୀ କଲମ ।
ପର ଘର—ଅନ୍ୟ ଲୋକ ଘର ।
ପାଟଜେମା—ରାଜାଙ୍କ ବଡ଼ ଝିଅ ।
ପାଟରାଣୀ—ରାଜାଙ୍କ ବଡ଼ ରାଣୀ ।
ପାଟ ଲୁଗା—ରେଶମ ଲୁଗା ।
ପାଟ ଜମି—ଏକ ପ୍ରକାର ଜମି ।
ପିତା ଶାଗ—ଏକ ପ୍ରକାର ଶାଗ ।
ପିତା ଶୁଖୁଆ—କରଣ୍ଡି ଶୁଖୁଆ ।
ପିତାମାତା—ବାପ ମା ।
ପିତା ପାଣି—ବର୍ଷା ଋତୁର ପ୍ରଥମ ଅସର ବର୍ଷା ।
ପାଚିଲା ଗାମୁଛା—ପାଣିକଷା ଗାମୁଛା ।
ପାଚିଲା ଫଳ—ଯେଉଁ ଫଳ କଞ୍ଚା ନୁହେଁ ।
ଉଖୁଡ଼ା ପାଗ—ଉଖୁଡ଼ା ପାଇଁ ପାଗ ।
ହାଣ୍ଡିପାଗ—ନୂଆହାଣ୍ଡି କରିବା ।
କାଳବେଳା—ଅଶୁଭ ମୁହୂର୍ତ୍ତ ।
ବାରବେଳା—ଅଶୁଭ ସମୟ ।
ବାଲ୍ୟଲୀଳା—ଦେବତାଙ୍କ ଭୋଗ ପିଲାଙ୍କୁ ବାଣ୍ଟିବା, ପିଲାଙ୍କୁ ଖୁଆଇବା ।
ବାଲ୍ୟଭୋଗ—ସକାଳ ଭୋଗ ।
ବାଲ୍ୟଚର—ଗୁପ୍ତ ସେବକ ।
ବାଲ ବିଧବା—ସ୍ୱାମୀଘରକୁ ଯିବା ପୂର୍ବରୁ ଯେଉଁ ସ୍ତ୍ରୀ ବିଧବା ହୁଏ ।
ବଡ଼ ଦେଉଳ—ଜଗନ୍ନାଥଙ୍କ ପୁରୀ ଦେଉଳ ।
ବଡ଼ବୋହୂ—ବଡ଼ ପୁଅର ସ୍ତ୍ରୀ ।

ବଡ଼ ବେମାର—କୁଷ୍ଠ ରୋଗ ।

ବଡ଼ଦାଣ୍ଡ—ପୁରୀର ବଡ଼ଦାଣ୍ଡ, ଜଗନ୍ନାଥ ସଡ଼କ ।

ବଡ଼ବଡ଼ିଆ—ଗୁରୁଜନ ।

କୂଅ ବିଲେଇ—କୂଅ କଣ୍ଟା ।

ଭୂଆ ବିଲେଇ—ବଣୁଆ ଅଣ୍ଡିରା ବିରାଡ଼ ।

କଦଳୀ ବାଡ଼ି—କଦଳୀ ବଗିଚ୍ଚ ।

ବେତ ବାଡ଼ି—ଲଗୁଡ଼ ।

ଭଦ୍ରକାଳୀ—ଠାକୁରାଣୀ ବିଶେଷ ।

ଭଦ୍ରଲୋକ—ଶିଷ୍ଟାଚାରସମ୍ପନ୍ନ ଲୋକ ।

ମହାନିଦ୍ରା—ମୃତ୍ୟୁ ।

ମହାଯାତ୍ରା—ମୃତ୍ୟୁ ।

ମହାନଦୀ—ନଦୀ ବିଶେଷ ।

ମହା ପୁରୁଷ—ସାଧୁ ପୁରୁଷ ।

ମହା ପ୍ରସାଦ—ପୁରୀ ଜଗନ୍ନାଥଙ୍କ ଭୋଗ ।

ନାକମାଛି—ନାକରେ ନାଉଥିବା ଅଳଙ୍କାର ।

କୁକୁରମାଛି—ଗୋରୁ ଦେହରେ ବସୁଥିବା ଏକପ୍ରକାର ମାଛି ।

ମାଲକଚ୍ଛ—ପାଇକଚ୍ଛ ।

ମାଲହାଣ୍ଡି—ମୃତାହନିସ୍ଥାରେ ବିସର୍ଜନ ହାଣ୍ଡି ।

ମାଲ ଗୋଦାମ—ବ୍ୟବସାୟୀଙ୍କ ଭଣ୍ଡାର ଘର ।

ମାଲମତା—ଜିନିଷପତ୍ର ।

ମଥାମଣି—ମୁଣ୍ଡରେ ନାଇବା ଅଳଙ୍କାର ବିଶେଷ ।

କୁଳମଣି—କୁଳର ଯୋଗ୍ୟ ଲୋକ ।

ଯୋଗନିଦ୍ରା—ତପସ୍ୟା ।

ଯୋଗ ମାୟା—ଦୁର୍ଗା ।

ଯୋଗସୂତ୍ର—ସମ୍ପର୍କ ସ୍ଥାପନ ।
ଯୋଗ ବିଯୋଗ—ମିଶାଣ ଫେଡ଼ାଣ ।
ଲଘୁଧାନ—ଯେଉଁଧାନ ଶୀଘ୍ର ପାଚେ ।
ଲଘୁଜନ—ଅଳ୍ପ ବୟସ୍କ ଲୋକ
ଲଘୁପାକ—ସହଜ ଜୀର୍ଣ୍ଣ ।
ହାଣ୍ଡିଶାଳ—ହାଣ୍ଡି ରଖିବା ଘର ।
ହାଣ୍ଡିଶାଳ—ରୋଷାଇ ଘର ।
ସୁନାସାର—ଏକପ୍ରକାର ଖତ ।
ସୁନାପୁଅ—ଭଲ ପୁଅ ।
ଅଗ୍ନିସେବା—ନିଆଁ ପୋଇଁବା ।
ଜନ ସେବା—ଲୋକଙ୍କ ସେବା ।
ପ୍ରସାଦ ସେବା—ଭୋଗ ପାଇବା ।

## ଗୋଟିଏ ଭାବ ପାଇଁ ଗୋଟିଏ ଶବ୍ଦ

### ( କ )

ଯେ ଶିକ୍ଷା ଦିଅନ୍ତି—ଶିକ୍ଷକ ।
ଯେ ଭିକ୍ଷା କରନ୍ତି—ଭିକ୍ଷୁକ ।
ଯେ ରକ୍ଷା କରନ୍ତି—ରକ୍ଷକ ।
ଯେ ନୃତ୍ୟ କରନ୍ତି—ନର୍ତ୍ତକ ।
ଯେ ଲେଖନ୍ତି—ଲେଖକ ।
ଯେ ଭକ୍ଷଣ କରନ୍ତି—ଭକ୍ଷକ ।
ଯେ ଚଳାନ୍ତି—ଚାଳକ ।
ଯେ ପାଳନ୍ତି—ପାଳକ ।

ଯେ କଥା କହେ—କଥକ ।
ଯେ ବୁଣନ୍ତି—ବୁଣାଳୀ ।
ଯେ କାଟନ୍ତି (ସୂତା)—କଟାଳୀ ।
ଯେ ଖେଳନ୍ତି—ଖେଳାଳୀ, ଖେଳୁବାଡ଼ ।
ଯେ ଦେଖେ (ଦେଖିବା ଲୋକ)—ଦେଖାଳୀ, ଦେଖଣାହାରୀ ।
ଯେ ଧାନ ବିଲରୁ ଘାସ ଉପାଡ଼େ (ବାଛେ)—ବଛୁଲ ।
ଯେଉଁମାନେ ଧାନ ରୁଅନ୍ତି—ରୁଆଳ ।
ଯେ କାଠ କାଟନ୍ତି—କାଠୁରିଆ ।
ଯେ ପଥର କାଟନ୍ତି—ପଥୁରିଆ ।
ଯେ କରତରେ କାଟେ—କରତିଆ ।
ଯେ ମାପେ—ମାପୁଣି ।
ଯେ ଗାଈ ଜଗେ—ଗାଈଆଳ ।
ଯେ ଛେଳି ଜଗେ—ଛେଳିଆ ।
ଯେ କୃଷି କରେ—ଚଷା ।
ଯେ ଶଗଡ଼ ଚଳାଏ—ଶଗଡ଼ିଆ ।
ଯେ ଘାଟ ଚଳାଏ—ଘାଟିଆ ।
ଯେ ପାଠ କରେ—ପାଠକ ।
ଯେ ଗୀତ ଗାଏ—ଗାୟକ, ଗାଏଣୀ ।
ଯେ ସେବା କରେ—ସେବକ ।
ଯେ ପ୍ରେରଣ କରେ—ପ୍ରେରକ ।
ଯେ ବାଦ୍ୟ ବଜାଏ—ବାଦକ ।
ଯେ ବନ୍ଧନ କରେ—ବାନ୍ଧକ ।
ଯେ ରାନ୍ଧେ—ରାନ୍ଧୁଣୀ, ରାନ୍ଧୁଣିଆ ।
ଯେ ସନ୍ଧାନ କରେ—ସନ୍ଧାନୀ ।

ଯେ ହଳ କରେ—ହଳଆ ।
ଯେ ଭାର ବହେ –ଭାରୁଆ ।
ଯେ ବୋଝ ବହେ – ବୋଝିଆ ।
ଯେ ରୋଗରେ ପଡ଼ିଥାଏ – ରୋଗୀ ।
ଯେ ଭୋଗ କରେ––ଭୋଗୀ ।
ଯେ ପୂଜା କରେ – ପୂଜାରୀ ।
ଯେ ଶଙ୍ଖା ତିଆରି (ତିଆର) କରେ—ଶଙ୍ଖାରି ।
ଯେ କଂସା ତିଆରି ( ତିଆର ) କରେ—କଂସାରି ।
ଯେ ହାଟ କରେ—ହାଟୁଆ ।
ଯେ ଗୁଜର କରେ—ଗୁଜର, ଗୁଜରିଆ ।
ଯେ ଶିକାର କରେ – ଶିକାରୀ ।
ଯେ ବାଣ ମାରେ —ବାଣୁଆ ।
ଯେ ଜାଲ ପକାଏ—ଜାଲୁଆ ।
ଯେ ଗାତରେ ବାସ କରେ—ଗାତୁଆ (ମୂଷା) ।
ଯେ ସବୁ ଖାଏ—ସବାଖିଆ ।
ଯେ ନରହତ୍ୟା କରେ—ନରହନ୍ତା ।
ଯେ ବକ୍ତୃତା ଦିଏ—ବକ୍ତା ।
ଯେ ପ୍ରତିଷ୍ଠା କରନ୍ତି—ପ୍ରତିଷ୍ଠାତା ।
ଯେ ରଚନା କରିଛନ୍ତି—ରଚୟିତା ।
ଯେ ସ୍ଥାପନ କରିଛନ୍ତି—ସ୍ଥାପୟିତା ।
ଯେ ଦାନ କରେ—ଦାତା ।
ଯେ ଗ୍ରହଣ କରେ—ଗ୍ରହୀତା, ଗ୍ରାହକ, ଗରାଖ ।
ଯେ ଜୟ କରିଥାଏ—ଜେତା ।
ଯେ ଦେଖେ – ଦ୍ରଷ୍ଟା ।

ଯେ ସୃଷ୍ଟି କରନ୍ତ—ସ୍ରଷ୍ଟା ।
ଯେ ପ୍ରଶ୍ନ କରନ୍ତ—ପ୍ରଷ୍ଟା ।
ଯେ ହୋମ କରନ୍ତ—ହୋତା ।

( ଖ )

ଯେ ସବୁବେଳେ ବହି ପଢ଼େ—ଗ୍ରନ୍ଥକୀଟ ।
ଯେ ସବୁବେଳେ କଥା କହେ,
କିନ୍ତୁ କାର୍ଯ୍ୟରେ କିଛି କରେ ନାହିଁ—ଓଲମା ।
ଯେ ଅଧିକ ନିଶା ଖାଏ—ନିଶାଖୋର ।
ଯାହା ପେଟରେ କଥା ରହେ ନାହିଁ—ଓବଡବା ।
ଯେ ପୁରାଣ ପଢ଼ନ୍ତ—ପୁରାଣପଣ୍ଡା ।
ଯେ କଥାରେ ସବୁ କହେ, କିନ୍ତୁକାର୍ଯ୍ୟରେ କିଛି କରେ ନାହିଁ—
ବଚନସର୍ବସ୍ୱ ।
ଯେଉଁ ସ୍ତ୍ରୀ ଗୋଟିଏ ସନ୍ତାନ ପ୍ରସବ କଲା ପରେ ଆଉ ସନ୍ତାନ ପ୍ରସବ
କରେ ନାହିଁ—କାକବନ୍ଧ୍ୟା ।
ଯେଉଁ ମନୁଷ୍ୟ ପାଣି ଦେବାଦ୍ୱାରା ଫଳ ହୁଏ ବା ନଷ୍ଟ ହେଉଥିବା
ଫଳ ରହେ—କାଟପାଣି ।
ଖୁଦ ଓ ଲମ୍ବ ପତ୍ରରେ ତିଆରି ଜାଉ—ଖୁଦପିଠା ।
ଧାନ ଗଜା ହୋଇଥିବା ସମୟରେ ବର୍ଷା ଅଭାବରେ ଧାନ
ମରିଯିବା—ଗଜାମରୁଡ଼ି ।
ଶିଶୁ ଜନ୍ମପରେ ତାର ଲଗ୍ନ ବାଛିବା—ଗଣାପୋଛା ।
ବସନ୍ତ ଋତୁ ନ ହେଉଣୁ ଯେଉଁ ଦକ୍ଷିଣ ପବନ ସାମୟିକ
ବହୁଥାଏ—ଚୈତ୍ରବସନ୍ତ ।
ଯେଉଁ ଲୋକ ଯେଉଁଠାରେ ଇଚ୍ଛା ସେଠାରେ ଖାଏ—ଛତରଖିଆ ।

ଯେଉଁ ଘରେ ପିଲା ଜନ୍ମ ହୋଇଥାଏ—ଅନ୍ତୁଡ଼ିଶାଳ ।
ଯେଉଁ ଘରେ ରନ୍ଧାଯାଏ ଏବଂ ଭାତ ତରକାରୀ ହାଣ୍ଡି ଥାଏ—
ହାଣ୍ଡିଶାଳ ।
ଯେଉଁ ସ୍ଥାନରେ ଢେଙ୍କି ପଡ଼ିଥାଏ—ଢେଙ୍କିଶାଳ ।
ଯେଉଁ ଘରେ ଗୋରୁ ରହନ୍ତି—ଗୋଶାଳା, ଗୁହାଳ ।
ଯେଉଁ ଘରେ ଘୋଡ଼ା ବନ୍ଧାଯାଏ—ଘୋଡ଼ାଶାଳ ।
ଅନ୍ୟପ୍ରକାରରେ—ଅନ୍ୟଥା ।
ସବୁ ପ୍ରକାରରେ—ସର୍ବଥା ।
ଦେଶରେ ରାଜା ନଥିବା ଅବସ୍ଥା—ଅରାଜକତା ।
ବିବାହ ଦିନ ବର ଓ କନ୍ୟାଙ୍କ ହାତରେ ବନ୍ଧା ହୋଇଥିବା
ସୂତା—ଅଷାଢ଼ୁଆ ସୂତା ।
ମାତୃହୀନ ଶିଶୁ—ମା ଛେଉଣ୍ଡ ।
ଯେଉଁ ସ୍ତ୍ରୀର ସବୁ ଛୁଆ ମରିଥାନ୍ତି—ଆଣ୍ଠୁକୁଡ଼ୀ (ମୃତବତ୍ସା) ।
ଯେ ଅନ୍ୟର ଉପକାର ମାନେ ନାହିଁ—ନିମକହାରାମ, କୃତଘ୍ନ ।
ଯେ ନିଜ ପ୍ରାଣ ନାଶକରେ—ଆତ୍ମଘାତୀ ।
ଯେ ବିଚାର ନ କରି କାମ କରେ—ଅବିମୃଷ୍ୟକାରୀ ଲୋକ ।
ଯାହା ଶେଷ ହୁଏ ନାହିଁ—ଅସରନ୍ତି ।
ପିତା ଦରିଦ୍ର ହୋଇଥିଲେ କନ୍ୟାକୁ ବର ହସ୍ତରେ ସମର୍ପଣ
କରନ୍ତି ଓ ବର ଘରେ ବିବାହ କାର୍ଯ୍ୟ ହୁଏ—ଡୋଲାକନ୍ୟା ।
ଖାଇବା ପାଇଁ ପଟ ପକାଇ ତା ପରେ ପାଣି ଛୁଞ୍ଚିବା—ପତର ପାଣି ।
ଯେଉଁ ଖଞ୍ଜା ଭିତର ଅଗଣାର ଦୈର୍ଘ୍ୟ ପୂର୍ବ ପଶ୍ଚିମ ଅପେକ୍ଷା
ଉତ୍ତର ଦକ୍ଷିଣରେ ଅଧିକ—ଦକ୍ଷିଣଶୂଳ ।
ଯେ ଅନୁସରଣ କରେ—ଅନୁସରଣିଆ ।

ଯାହା କଳନା କରିହେବ ନାହିଁ—ଅକଳନ୍ତା ।
ଯାହା ସୁମାର ହେବ ନାହିଁ—ଅସୁମାର ।
ରକ୍ଷିତା ସ୍ତ୍ରୀ—ଠାଇଁଆଣୀ ।
ଚଗ ଡାହାଣୀ—ଯେଉଁ ସ୍ତ୍ରୀ ଘରେ ନ ରହି ବାହାରେ ସବୁବେଳେ ବୁଲେ ।
ନଣନ୍ଦପୁଞ୍ଜଳ—ନବବଧୂ ଗୃହ ପ୍ରବେଶ ସମୟରେ ନଣନ୍ଦର ପ୍ରାପ୍ୟ ବସ୍ତୁ ।
ଅହ୍ୟତେଙ୍ଗୁରୁ—ସଧବା ସ୍ତ୍ରୀର ଶବ ଯାତ୍ରାର ବାଜା ।

---

## ରୂଢ଼ି

୧ । ଅଳ୍ପବିଦ୍ୟା ଭୟଙ୍କରୀ—ସାମାନ୍ୟ ଜ୍ଞାନରେ ବିଜ୍ଞତାର ପରିଚୟ ବିପଜ୍ଜନକ ।
୨ । ଅଲଣା କଥା—ଅସାର କଥା ।
୩ । ଅଗ୍ନିଶର୍ମା ହେବା—ଦୁର୍ବାସା ସାମାନ୍ୟ କଥାରେ ଅଗ୍ନିଶର୍ମା ହୁଅନ୍ତି । (ରାଗରେ ଜଳିଯିବା)
୪ । ଅକଲ ସଲାମି—ମୁଁ ଏହି କାମଟି କରି ଅକଲ ସଲାମି ପାଇଲି, (ଉଚିତ ଶାସ୍ତି) ।
୫ । ଅନ୍ଧ ବୁଝାମଣା—(ଅନ୍ୟାୟ ବିଚାର) ଆଜକାଲି ରାଜୁଡ଼ା ଅମଳର ଅନ୍ଧ ବୁଝାମଣା ଆଉ ନାହିଁ ।
୬ । ଅନ୍ଧର ଲଉଡ଼ି—ଅସହାୟର ସମ୍ବଳ,
ଅନ୍ଧର ଲଉଡ଼ି ମୋର ଦୁଃଖି ଗଣ୍ଠିଧନ ।
(ଯଶୋଦା ଉକ୍ତି)

୭ । ଅଠାକାଠିରେ ପକାଇବା—କୌଶଳରେ ଧରିବା,
ଫାଲରେ ପକାଇବା ।

୮ । ଅଠା ବୋଳ ଦେବା— ଅଯଥା ଦୋଷାରୋପ କରିବା ।

୯ । ଅନ୍ଧ ଦେଶରେ ଦର୍ପଣ ବିକିବା } ଅଜ୍ଞ ନିକଟରେ ଜ୍ଞାନ
କାଲ ଆଗରେ ମୂଳା ଶୁଣାଇବା } ବଖାଣିବା ।

ଅନ୍ଧ ଦେଶକୁ ଗଲ ଦର୍ପଣ ବିକ
କନ୍ଧ ହାତରେ ଦେଲ ଗୋଦାନ ଟେକ
ନଡ଼ାକୁ ଖଡ଼ା ବୋଲି କଲ ଚର୍ବଣ
କାମୁଡ଼ା ଘୋଡ଼ା ମୁଖେ ଦେଲି ଚୁମ୍ବନ
ହେ ରାଜା, କି କଲ ! ବିଷ୍ଣୁ ପ୍ରତିମାକୁ ତଳେ
ଥୋଇଲ ? (ଯଦୁମଣି)

୧୦ । ଅଘିରାକୁ ବାଇଗଣ ଫିଙ୍ଗିବା—ଅନର୍ଦ୍ଧିଷ୍ଟ ଫଳ ଆଶାରେ
କାମ କରିବା ବା ବ୍ୟସ୍ତ କରିବା ।

୧୧ । ଅହି ନକୁଳ ସମ୍ପର୍କ—ଘୋର ଶତ୍ରୁତା, ବିରୋଧଭାବ ।

୧୨ । ଅକାଳ କୁଷ୍ମାଣ୍ଡ—କୁଳ କଳଙ୍କ ବା ଅକର୍ମଣ୍ୟ ।

୧୩ । ଅରଣ୍ୟ ରୋଦନ—ନିଷ୍ଫଳ ପ୍ରାର୍ଥନା । ବସ୍ତ୍ରହରଣ ବେଳେ
ଦ୍ରୌପଦୀଙ୍କର କାକୁତି ମିନତି ଦୁଃଶାସନଠାରେ ଅରଣ୍ୟ
ରୋଦନରେ ପରିଣତ ହେଲା ।

୧୪ । ଆକାଶ କଇଁଆ, ଆକାଶ କୁସୁମ, ଲେଢ଼ବାଳ, ଜଭହାଡ଼,
ପିମ୍ପୁଡ଼ି ରକତ, ଡମ୍ବିରି ଫୁଲ—ସୃଷ୍ଟି ଛଡ଼ା କଥା,
ଅସମ୍ଭବ କଥା ।

୧୫ । ଆଖି ନାଲ କରିବା } ଅତ୍ୟଧିକ ରାଗିଯିବା ।
ନାଲ ଆଖି ଦେଖାଇବା }

୧୬ । ଆଖି ଦେବା—ଈର୍ଷା କରିବା ।

୧୭ । ଆଖି ରଖିବା—ଦୃଷ୍ଟି ରଖିବା ।

୧୮ । ଆଖି ପାଇବା—ପସନ୍ଦ ହେବା ।

୧୯ । ଆଖି ନ ପାଇବା—ଦୃଷ୍ଟି ସୀମାରୁ ଅନ୍ତରିତ ହେବା ।

୨୦ । ଆଖିରେ ଧୂଳି ପକାଇବା—ଦେଖୁ ଦେଖୁ ବା ଜାଣୁ ଜାଣୁ ଠକି ଦେବା ।

୨୧ । ଆଖି ବୁଜିବା—ମରିବା ।

୨୨ । ଆଗତ ଚତ୍ରେଇକ ବେସରବଟା—ଅନିଶ୍ଚିତ ଭବିଷ୍ୟତ ପାଇଁ ପ୍ରସ୍ତୁତ ହୋଇ ବସିବା ।

୨୩ । ଉଦ୍ଭନା ଧାନ ଗଜା ହେବା—ଅସମ୍ଭବ ସମ୍ଭବବା ।

୨୪ । ଉପରେ ପଡ଼ି କହିବା—ଅଯାଚିତ ଭାବରେ କହିବା । (ସାଧୁ ଓ ମଧୁର କଥୋପକଥନ ବେଳେ ଯଦୁ ଉପରେ ପଡ଼ି କେତେକ କଥା କହିବାରୁ କଳହ ହେଲା ।)

୨୫ । ଏକା ମାଘକେ ଶୀତ ନ ଯାଏ—ନିତ୍ୟ ବା ନିୟମିତ ଘଟଣା ସବୁବେଳେ ଘଟିବ ।

୨୬ । ଏଘର ମାଉସୀ ସେ ଘର ପିଉସୀ—ଯେ ଛିଦ୍ର କହି କଳି ଲଗାଏ ।

୨୭ । ଓଳିଆରୁ ଗଜା—ଜନ୍ମରୁ ସିଆଣିଆ ।

୨୮ । ଔଷଧ ଗଛରେ ଛାଟିଆ କାମୁଡ଼ିବା—ଜଣକ ପାଇଁ ଅନ୍ୟ ଜଣକୁ ଦୋଷୀ କରିବା ।

୨୯ । କାଠିକର ପାଠ—କଷ୍ଟ ସାଧ୍ୟ ।

୩୦ । କପାଳ ଫିଟିବା—ଭାଗ୍ୟ ଉଦୟ ହେବା ।

୩୧ । କପାଳ ଫାଟିବା—ସର୍ବନାଶ ପହଞ୍ଚିବା ।

୩୨ । କଂସାଋ ଘରର ପାଣ୍ଠ—କୌଣସି କଥାରେ ଶଗ୍ଭର୍ଯ୍ୟସ୍ତ ହୋଇ ବଣ୍ଣିଷିକାରେ ଯେ ଖିଚ ନ ହୁଏ ।

୩୩ । କାନ୍ଧ ଅଲଗୁଣୀ, ଅଣ୍ଟା ସିନ୍ଦୁକ—ଦେହ ଛଡ଼ା ଅନ୍ୟ ସମ୍ବଳ ନ ଥିବା ।

୩୪ । କାନରେ ହାତ ଦେବା—ଆଶ୍ଚର୍ଯ୍ୟାନ୍ୱିତ ହେବା ।

୩୫ । କାମରେ ହାତ ଦେବା—କାମ ଆରମ୍ଭ କରିବା ।

୩୬ । କାଠ ହୋଇ ଯିବା—ସ୍ତମ୍ଭୀଭୂତ ହେବା ।

୩୭ । କୁଟା ଖଣ୍ଡିକ ଦିଖଣ୍ଡ ନ କରିବା—ଅଳସୁଆ ହୋଇ ବସିବା ।

୩୮ । କଟା ଘାରେ ଚୂନ ଦେବା—ଦୁଃଖ ଉପରେ ଦୁଃଖ ଦେବା ।

୩୯ । କଥାରେ ଗଣ୍ଠିଦେବା—କୌଣସି କଥାକୁ ନଠେଇ ଧରିବା ।

୪୦ । କଥା ତଳେ ନ ପକାଇବା—ଆଦେଶ ମାନି ଚଳିବା ।

୪୧ । କଣ୍ଟା ବାଡ଼ରେ ଲୁଗା ପକାଇ କଳି କରିବା—ଅଯଥା କଳି କରିବା

୪୨ । କୁହୁଡ଼ ପହଁରିବା—ପଣ୍ଡ ପରିଶ୍ରମ କରିବା ।

୪୩ । କଳାକାଠ ପଡ଼ିବା—ଶୁଖିଲା ଦେଖାଯିବା ।

୪୪ । କଳା କନା ବୁଲାଇବା—ସର୍ବନାଶ କରାଇବା । (ଚୋର ତାଙ୍କଘରେ କଳାକନା ବୁଲାଇ ଦେଲା । )

୪୫ । କେରଣ୍ଡି ଗୁନ୍ଥି ଶେଉଳ ଧରିବା—ଅଳ୍ପ ବ୍ୟୟରେ ବଡ଼ କାମ ଆଦାୟ କରିବା ।

୪୬ । ଖଡ଼ି ଛୁଆଁ—ବିଦ୍ୟାରମ୍ଭ ।

୪୭ । ଖିଅ କାଢ଼ିବା } ଖିଅ ଧରିବା } କଥାକୁ ଘାଣ୍ଟି ଦୋଷ ବାହାର କରିବା ।

୪୮ । ଖାଲରେ ପକାଇବା—ବିପଦରେ ପକାଇବା ।

୪୯ । ଖୋଳ ଉଣ୍ଡିବା—ପର କାମରେ ଦୋଷ ଖୋଜିବା ।

୫୦ । ଝୁଣ୍ଟି ଦେବା—(୧) ଘାପ ଚେଜିବା ।

(୨) କଷ୍ଟ ଦୃଷ୍ଟି ପକାଇବା ।

୫୧ । ଗୋଟିଏ ଗୁଣ୍ଡଲରେ ଗଢ଼ା—ଅତି ସୁନ୍ଦର ।

୫୨ । ଗୋଡ଼ ବୋଇଲେ ହାତ ବୋଲ କରିବା—ନାନା ପ୍ରକାର ଦୁଷ୍ଟାମି କରିବା ।

୫୩ । ଗଳଗ୍ରହ ହେବା—ବିପଦ ଆଣିବା ।

୫୪ । ଗୁଜୁରାଣ ମେଣ୍ଟାଇବା—କଷ୍ଟରେ ଚଳିବା ।

୫୫ । ଗୁରୁମାର ବିଦ୍ୟା—ଗୁରୁଙ୍କଠାରୁ ଶିଖି ପୁଣି ସେଥିରେ ତାଙ୍କୁ ପରାସ୍ତ କରିବା ।

୫୬ । ଗାଲରେ ହାତ ଦେଇ ବସିବା—ଭାବନା କରିବା ।

୫୭ । ଗାଲେଇ ଦେବା—ଶୁଣି ତଦନୁରୂପ କାମ ନ କରିବା ।

୫୮ । ଗୁମର ଫିଟିଯିବା—ରହସ୍ୟ ଜଣା ପଡ଼ିବା ।

୫୯ । ଗୋଡ଼ ହାତ ଧରିବା—ନଉନ ହୋଇ ପ୍ରାର୍ଥନା କରିବା ।

୬୦ । ଗୋଡ଼ ଟେକି ବସିବା—ପ୍ରସ୍ତୁତ ରହିବା ।

୬୧ । ଘରବୁଡ଼ା—ଅନର୍ଥ ଲଗାଇ ଯେ ଘର ଭାଙ୍ଗିଦିଏ ।

୬୨ । ଘରେ ନ ପଶୁଣୁ ଗୁଳ ବାଜିବା—କାର୍ଯ୍ୟ ଅନୁକୂଳ ପୂର୍ବରୁ ଅମଙ୍ଗଳ ସୂଚନା ।

୬୩ । ଘର ଡିଙ୍କି କୁମ୍ଭୀର ହେବା ⎫ ଆତ୍ମୀୟ ଲୋକ ବିଶ୍ୱାସ-
ଅର୍ଣ୍ଣି କୁଣ୍ଡ ତଣ୍ଟି କାଟେ ⎭ ଘାତକ ହେବା ।

୬୪ । ଘର ସୁନା ଭେଣ୍ଡି—ଅପଦାର୍ଥ ହେବା ।

୬୫ । ଘର ବୁଢ଼ ପାଣି ଆଣୁ ଏ—ଅଜ୍ଞାତରେ ବିପଦ ମାଡ଼ି ଆସିବା ।

୬୬ । ଘଣ୍ଟି ଘୋଡ଼ାଇବା—ଦୋଷ ଲୁଚାଇବା ।

୬୭ । ଚଳୁ କରି ଦେବା—ସହଜରେ ଗ୍ରାସ କରି ଦେବା ।

୬୮ । ଚହଟ ଚମ୍ପା—ଢଙ୍ଗ ଢାଙ୍ଗରେ ମନ କଣିବା ।

୬୯ । ଚୋରର ଘରେ ଅନ୍ଧାର—ସତ୍ୟ ବସ୍ତୁସ୍ୱ ଆତ୍ମପ୍ରକାଶ କରିବା ।

୭୦ । ଚୂନ ଦଉଡ଼ି କଟା—ଶାସନର ବନ୍ଧଭୂତ ।

୭୧ । ଚଟା କାଟିବା—ଠକ ଦେବା ।

୭୨ । ଚୂଲବା ଶଗଡ଼ରେ ହାତ ଦେବା—(ଅତ ଦୁଷ୍ଟାମି କରିବା)

୭୩ । ଚୂନ୍ତ୍ର ମାଛୁ ପରୀକ୍ଷା } ଚନ୍ନ ଚନ୍ନ ପରୀକ୍ଷା ।
ଝୁଣ୍ଟି ନାଣ୍ଡି ଦେଖିବା }

୭୪ । ଛୁଞ୍ଚ ପଚେଇବା—ସାହସ ସହକାରେ ସହିବା ।

୭୫ । ଛୁଞ୍ଚ ପଥର କରିବା—ଦମ୍ଭ ଧରି ରହିବା ।

୭୬ । ଚୋର ମନ ଗଣ୍ଠିରେ—ଦୁଷ୍ଟ ଲୋକର ଦୁଷ୍ଟ ଚିନ୍ତା ।

୭୭ । ଚୋର ଖୋଜେ ଅନ୍ଧାର ରାତ—ସୁଯୋଗ ଖୋଜିବା ।

୭୮ । ଛେନାରୁ ଚୋପା ଛଡ଼ାଇବା } ବୃଥା ଦୋଷ
ଯିବରୁ ଶିର ବାହାର କରିବା । } ବାହାର କରିବା ।

୭୯ । ଚୋରକୁ କହିବା ଚୋରି କର, ପାହାରିକୁ କହିବା ଜଗିଥା—
ଦୁଇମୁଣ୍ଡିଆ କଥା କହିବା ।

୮୦ । ଛୁଇ ପଡ଼ିଲେ ନାହିଁ ଡେଇଁବା - ସହି ନ ପାରିବା ।
(ମୋ ଛୁଇ ପଡ଼ିଲେ ତା ନାହିଁ ଡେଇଁଛି, ମୁଁ ତାଠାରୁ କଣ ଆଶା କରିବ ?)

୮୧ । ଚୂକର କୋଳଗଛ ଛୁଇ—ଅସ୍ଥାୟୀ ହେବା ।

୮୨ । ଛେଳି ଗୋଡ଼ରେ ପାଳ ମଳିବା—ଯେ ଯାହା କରି ନ ପାରେ ତଦ୍ୱାରା ତାହା କରାଇବା ।

୮୩ । ଛୁଇକ ଛଟା, ପାଣିକ ଯୋଟା—ବୋକାମି ଅର୍ଥରେ ।

୮୪ । ଜଳନ୍ତା ନିଆଁରେ ଲୁଣ ପକାଇବା—ବଢ଼େଇବା ଅର୍ଥରେ ।

୮୫ । ଜୀବନ ମୁର୍ଚ୍ଛିବା—ପ୍ରାଣ ବଳିଦେବା ।

୮୬ । ଜଣ୍ଡାତେଲ, ମେଣ୍ଢା ବାଳ—ଯଥାଯୋଗ୍ୟ ।

୮୭ । ଜପାମାଳ—ଅତିପ୍ରିୟ ।

୮୮ । ଝିଣ୍ଟିକା ମାର ବଣି ପୋଷିବା—ଦୁର୍ବଳକୁ ମାରି ସବଳକୁ ପୋଷିବା ।

୮୯ । ଝିମିଟି ଖେଳରୁ ମହାଭାରତ—ସାମାନ୍ୟ କଥା ବଡ଼ ଭୀଷଣ ହେବା ।

୯୦ । ଝାଙ୍କ ଛଡ଼ାଇ ଦେବା—ଜଡ଼ ଧରି ଅଥୟ କରିବା ।

୯୧ । ଝୋଲବୁଡ଼ା—ଶ୍ରମାର୍ଜ୍ଜିତ । (ଝୋଲବୁଡ଼ା ଧନ ପାଣିରେ ପଡ଼ିବ ନାହିଁ ।)

୯୨ । ଢେଙ୍ଗା ମୁଣ୍ଡରେ ଠେଙ୍ଗା—ଯେ ଯାହା କରୁ ପଛକେ ସବୁର ଦାୟିତ୍ୱ ମୁରବୀ ଉପରେ ।

୯୩ । ଡାଳ କାଟି ଦେବା—ଆଶ୍ରୟ ଶୂନ୍ୟ କରିବା ।

୯୪ । ଢୋଲ ପିଟିବା—ଘୋଷଣା କରି ପ୍ରଚାର କରିବା । (ସେ ସୋନାରେ ଢୋଲ ପିଟୁଛି ।)

୯୫ । ଢୋଲ ଭିତରେ ମୂଷା—ଗୁପ୍ତଚର ଭାବରେ ରହିବା ।

୯୬ । ତେଲ ଲଗାଇବା—ତୋଷାମଦ କରିବା ବା ବୃଥା କରିବା । (ତା ବୃଦ୍ଧିର ସମୟ କେବଳ ତେଲ ଲଗାଇବାରେ ଗଲା ।)

୯୭ । ତନ ପାଞ୍ଚ ରୁ ଯିବା—ନାମ ଲୋପ ହେବା ।

୯୮ । ତଳକୁ ତାଳ କରିବା—ଶ୍ରେଷ୍ଠ କଥାକୁ ବନ୍ଦ କରିବା । (ତାର କଥାରେ କୌଣସି ମୂଲ୍ୟ ନାହିଁ, କାରଣ ସେ ତଳକୁ ତାଳ କରି କହେ ।)

୯୯ । ଦେଖି ପାରିବା - ଭଲ ପାଇବା । ( ଶାଗଖିଆକୁ ତେଲଖିଆ ଦେଖିପାରେ ନାହିଁ ।)

୧୦୦ । ଦାନା ମାରିବା } ବୃତ୍ତି ଉଚ୍ଛେଦ କରିବା
ଦାନାରେ ଧୂଳି ଦେବା } ଲୋକଙ୍କ ଦାନା ମାରିବା
ମହାପାପ ।

୧୦୧ । ଦାଉ ସାଧିବା—ପ୍ରତିଶୋଧ ନେବା । ସେ ବେଳ ଜଣି ଦାଉ ସାଧିଲା ।

୧୦୨ । ଦଫା ରଫା କରିବା } ସର୍ବନାଶ ହେବା । ମକଦ୍ଦମାରେ
ଦଫା ଶେଷ କରିବା । } ତାର ଦଫା ରଫା ହେଲା ।

୧୦୩ । ଦଗା ଦେବା—ଠକାଇବା । (ସେ ଠିକଣା ବେଳେ ମୋତେ ଦଗା ଦେଲା । )

୧୦୪ । ଦାନ୍ତରେ କୁଟା ଦେବା—ଶରଣ ପଶିବା ।

୧୦୫ । ଦୀପ ତଳ ଅନ୍ଧାର—ପଣ୍ଡିତ ପୁଅ ମୂର୍ଖ ହେବା ।

୧୦୬ । ଦିଅଁ ଗଢ଼ୁ ଗଢ଼ ଶାଳଗ୍ରାମ } ଭଲ କରିବାକୁ ଯାଇ ମନ୍ଦ
ଦିଅଁ ଗଢ଼ୁ ଗଢ଼ୁ ବାନର } କରି ପକାଇବା ।

୧୦୭ । ଦେହଲଗା—ବିଶ୍ୱସ୍ତ । ( ରମିଆ ତାଙ୍କର ଦେହଲଗା ଚାକର । )

୧୦୮ । ଦେହ ଛଡ଼ା—ଦାୟିତ୍ୱହୀନ ।

୧୦୯ । ଧର୍ମକୁ ଆଖିଠାର—ପ୍ରତାରଣା ଅର୍ଥରେ ।

୧୧୦ । ଧୂଆ ମୂଳା ଅଧୂଆ ମୂଳା ସବୁ ସମାନ—ଯୋଗ୍ୟାଯୋଗ୍ୟର ଭେଦ ନ ବିଚାରିବା ।

୧୧୧ । ଧାଡ଼ି ଦେବା—ବାରମ୍ବାର ଯାତାୟାତ କରିବା । ସେ ଖଜଣା ନ ଦେବାରୁ ରଜାଘର ପାଇକମାନେ ତା ଘରକୁ ଧାଡ଼ି ଦେଉଛନ୍ତି ।

୧୧୨ । ନଙ୍କ ନ ଦେଖୁ ଲଙ୍ଗଳା—କୌଣସି ଗୋଟିଏ କାମରେ ବିପଦ ଆଶଙ୍କାରେ ଉଦ୍‌ବିଗ୍ନ ହୋଇଯିବା । ( ସେ କଣ କରିବ କରୁ ଦେଖାଯିବ । ନଙ୍କ ଦେଖୁଁ ଲଙ୍ଗଳା କାହିଁକି ?)

୧୧୩ । ନାଠର ଗୋବର୍ଦ୍ଧନ—ଅନର୍ଥର କାରଣ । ( ଏ ଲୋକଟି କମ୍ ନୁହେଁ, ନାଠର ଗୋବର୍ଦ୍ଧନ । )

୧୧୪ । ନଗ୍ଦେଢ଼ ବନ୍ଧା—ଜଦ୍‌ଖୋର । ସେ ନେଲେ ଯାଇଁ ଯିବ, ନଗ୍ଦେଢ଼ବନ୍ଧା ।

୧୧୫ । ନିଜ ଶିଙ୍ଗରେ ମାଟି ଖୋଳିବା—ନିଜ ବଳରେ ବଳୀୟାନ୍ ହେବା ।

୧୧୬ । ନାକେଦମ୍ କରିବା—ଅସ୍ଥିର କରିବା । ସ୍ରେଗଟା ସହଜରେ ଛାଡ଼ୁ ନାହିଁ । ମୋତେ ନାକେଦମ୍ କଲାଣି ।

୧୧୭ । ନାଁ କରିବା—ଖ୍ୟାତି ଅର୍ଜିବା । ସେ ମଲମୁଣ୍ଡିଆଟି ହେଲେ କଅଣ ହେବ, ଖୁବ୍ ନାଁ କରି ପାଇଛନ୍ତି ।

୧୧୮ । ନାଁ ପକାଇବା—ଅଖ୍ୟାତି ପାଇବା । ସେ ମହତ୍ ଘରର ପିଲା, କିନ୍ତୁ ଘୃଣିଆଡ଼େ ଖାଲି ନାଁ ପକାଇଲା ।

୧୧୯ । ନାଁ ଲୁଚିବା—ମୃତ୍ୟୁ ହେବା । ମୋତେ ଏତେ ଜଳେଇଲୁ ତୋ ନାଁ ଲୁଚୁ ରେ ।

୧୨୦ । ନେଇ ଆଣି ଥୋଇବା—କୌଶଳ ସହକାରେ କାମ କରିବା । ନେଇ ଆଣି ଥୋଇ ପାରିଲେ ଗ୍ରେଣ ବଦ୍ୟାଭଲ ।

୧୨୧ । ନାକ ଟେକିବା—ଘୃଣା କରିବା । ଶାଶୁ କଥାରେ ବୋହୂ ନାକ ଟେକୁଛି, ଚଳିବେ କପରି ?

୧୨୨ । ନାକ ଛୁଞ୍ଚାଡ଼ିବା—ବିରକ୍ତି ପ୍ରକାଶ କରିବା ।

୧୨୩ । ନାହିରେ ତେଲ ଦେଇ ଶୋଇବା—ଚିନ୍ତାଶୂନ୍ୟ ହେବା ।

୧୨୪ । ନାକ କାନ ଧରାଇବା—ଶାସ୍ତିଦେବା ଅର୍ଥରେ ।

୧୨୫ । ନାବ ଚଳାଇବା—ଜୀବିକା ନିର୍ବାହ କରିବା । ଭଲ ମନ୍ଦ କଏ ବାଛୁଛି, ନାବ ଚଳିଲେ ଗଲା ।

୧୨୬ । ପାଗ ବାନ୍ଧି ବାନ୍ଧି କଟେଣ୍ଟ ବରଖାସ୍ତ—ବହୁ ଆଡ଼ମ୍ବରରେ କାମ ହୁଏ ନାହିଁ ।

୧୨୭ । ପାନରୁ ଚୂନ ଖସିଯିବା—ସାମାନ୍ୟ କାରଣବଶତଃ, ପାନରୁ ଚୂନ ଖସିଲେ ଶାଶୁ ବୋହୂ କଳି ଲଗୁଛନ୍ତି ।

୧୨୮ । ପୁଅ ବାର } ଅତି ସୁବିଧା । ବାପା ତ ମହାଜନ,
କଟେ ବାର } ଶଶୁର ଜମିଦାର, ଏଣୁ ତାର
ପୁଅ (କଟେ) ବାର ।

୧୨୯ । ପେଟ କଥା—ମନ କଥା । ସେ ତଡ଼େଇ ତରଗୁଣୀଙ୍କ ପେଟକଥା ଜାଣିପାରେ ।

୧୩୦ । ପାଟିରେ ବାଡ଼ବତା } କହିବାକୁ ମନା କରିବା । ଏ ତ
ମୁହଁରେ ହାତଦେବା } ସ୍ୱାଧୀନ ଯୁଗ, କାହା ପାଟିରେ
ବାଡ଼ବତା ଦେବା ?

୧୩୧ । ପାଶଙ୍ଗରେ ପକାଇବା—ଖାତିର କରିବା ।

୧୩୨ । ପୁଅ ନାଁ ଧରି ପୋଖରୀ ଖାଏ—ଅନ୍ୟ ଜଣକ ନାଁରେ ଭୋଗ କରିବା ।

୧୩୩ । ପାଲରେ ପକାଇବା—କୌଶଳରେ ଆୟତ୍ତ କରିବା ।

୧୩୪ । ପାଣି ଛଡ଼ାଇବା—ମୂର୍ଚ୍ଛି ଦେବା । ସେ ତା ଜୀବନକୁ ପାଣି ଛଡ଼େଇ ଦେଇଛି ।

୧୩୫ । ପାଣିରେ ସର ପକାଇବା—କୌଶଳରେ ମନ ଭୁଲାଇବା ।

୧୩୬ । ପାଣି ନ ଗଳିବା } ଅତି ଘନିଷ୍ଠତା । ଦୁହିଁଙ୍କ ଭିତରେ
କ୍ଷୀର ନୀର ସମ୍ବନ୍ଧ } ପାଣି ଗଳୁ ନାହିଁ ।

୧୩୭ । ପାଣି ପିଆଇବା—ଅଥୟ କରିବା, ଦମ୍ ବାହାର କରିବା । ସେ ତା ସାଙ୍ଗରେ ଏପରି ଲଗିଲା ଯେ, ଶେଷରେ ତାକୁ ପାଣି ପିଆଇ ଦେଲା ।

୧୩୮ । ପିଠିରେ ପଡ଼ିବା—ସାହାଯ୍ୟ କରିବା । ଏ ବେଳରେ ତା ପିଠିରେ ପଡ଼ିବାକୁ କେହି ନାହିଁ ।

୧୩୯ । ପେଟ କଥା ପିଠି ନ ଜାଣେ—ମନକଥା ଅନ୍ୟ କେହି ନ ଜାଣେ ।

୧୪୦ । ପିଲେହି ପାଣି ହେବା—ଉପୁରେ ଅସ୍ଥିର ହେବା ।

୧୪୧ । ପେଟରେ ଭୋକ ମୁହଁରେ ଲାଜ—ଇଚ୍ଛା ସତ୍ତ୍ୱେ ଲଜ୍ଜା ହେତୁ ନ ନେବା । ଦେଉଛନ୍ତି ତ ନେବୁ, ପେଟରେ ଭୋକ ମୁହଁରେ ଲାଜ କାହିଁକି ?

୧୪୨ । ପେଟରୁ କାଟିବା—ଅନ୍ୟ ପାଇଁ ନିଜ ସୁଖ କମାଇବା । ସେ ଗଣ୍ଡାଖଣ୍ଡିକ ପେଟରୁ କାଟି ଝିଅଙ୍କୁ ବଞ୍ଚାଇଛି ।

୧୪୩ । ପେଟ ବଥାଇବା / ମୁଣ୍ଡ ବଥାଇବା } ଦୁଃଖ ଅନୁଭବ କରିବା । ତା ପାଇଁ ତୋ ପେଟ (ମୁଣ୍ଡ) ବଥାଉଛି କାହିଁକି ?

୧୪୪ । ଫସର ଫାଟିଯିବା—ବ୍ୟର୍ଥ ହେବା । ତାଙ୍କର ସମସ୍ତ ଆୟୋଜନ ଫସର ଫାଟିଗଲା ।

୧୪୫ । ଫଟେଇ ହେବା—ବାରମ୍ବାର ପଚାରିବା । ଥରେ ତ କହିଲି କେତେ ଫଟେଇ ହେଉଛୁ ?

୧୪୬ । ଫାଙ୍କି ଦେବା—ଅସ୍ୱୀକାର କରିବା । ସେ ତାଙ୍କୁ ଶହେ ଟଙ୍କା ଫାଙ୍କିଦେଲା ।

୧୪୭ । ଫାଙ୍କା ଆବାଜ—ବୃଥା ଧମକ ।

୧୪୮ । ଫୁଟ୍‌କି ମାରିବା / ଫୁତ୍କାରରେ ଉଡ଼ାଇବା } —ଅପସନ୍ଦ କରିବା

୧୪୯ । ବଣ ବିରୁଆଟି—ଅତି ଦୁଷ୍ଟ । ସେ ବଣ ବିରୁଆଟିଟାଏ, ତା ସଙ୍ଗରେ ମୋ ପିଲାଙ୍କୁ କିଏ ଛାଡ଼ିବ ?

୧୫୦ । ବକ ଧାର୍ମିକ
ବିରାଡ଼ ବୈଷ୍ଣବ } ଠକ

୧୫୧ । ବାଆକୁ ବତା—କ୍ଷୀଣ ଆଶ୍ରୟ । ଭଗବାନ ଯାହା କରିବେ, ଆମ ଚେଷ୍ଟା କେବଳ ବାଆକୁ ବତା ।

୧୫୨ । ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଇବା—ଅସମ୍ଭବ ପାଇଁ ଚେଷ୍ଟା । ତୁ ତ ଗଜମୂର୍ଖ, ତୁ ପୁଣି ପଣ୍ଡିତ ସଭାକୁ ମନ କରୁଛୁ ? ଏ ତ ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଇବା କଥା ।

୧୫୩ । ବାଘ ଘରେ ମିରିଗର ନାଚ—ଭୟର ଅଭାବରେ କର୍ତ୍ତାଙ୍କ ବିଚରଣ ।

୧୫୪ । ବିଛୁ ମନ୍ତ୍ର ନ ଜାଣି ସାପ ବିଲରେ ହାତ ଦେବା—ଧୃଷ୍ଟତାରେ ବିପଦ ବରଣ କରିବା । ଘରେ ସାହୁର ନାଁ ନାହିଁ, ସେ ପୁଣି ଜମିଦାରଙ୍କ ସଙ୍ଗରେ ଲାଗିଛୁ । ଏ ତ ବିଛୁ ମନ୍ତ୍ର ନ ଜାଣି ସାପ ବିଲରେ ହାତ ଦେବା କଥା !

୧୫୫ । ବିଭାବେଳେ ବାଇଗଣ ରୁଆ—ଶେଷ ମୁହୂର୍ତ୍ତରେ କାମର ଯୋଗାଡ଼ କରିବା । କାଲି ପରୀକ୍ଷା, ଆଜି ବହି କଣା । ବିଭାବେଳେ କଣ ବାଇଗଣ ରୁଆ ?

୧୫୬ । ବାର ଓଳି ଶୁଣ୍ଢି ପିଣ୍ଡା—ଲଫଙ୍ଗା ହେବା ।

୧୫୭ । ବେଙ୍ଗ ପେଟରେ ଘିଅ—ଅସମ୍ଭବ କଥା ।

୧୫୮ । ବୁଲେଇ ବକଲେ ସୁନା ପିତଳ—ଯାଚ ଦେଲେ ମୂଲ୍ୟ ରହେ ନାହିଁ ।

୧୫୯ । ବୋଝ ଉପରେ ନଳିତାବିଡ଼ା—କଷ୍ଟ ଉପରେ ପୁଣି କଷ୍ଟ । ସେ ଏକେଇଗୁଡ଼ାଏ କାମ ସମ୍ଭାଳୁଛି । ତା ଉପରେ ପୁଣି କାମ ଲଦିବା, ବୋଝ ଉପରେ କଣ ନଳିତା ବିଡ଼ା ?

୧୬୦ । ବାପ ଘଣ ଠିଙ୍କି ଗିଳ—ବାଧ କରି କରାଇବା । ସେ ଏ କାମ କରିବାକୁ ଅକ୍ଷମ, ତାକୁ ବାପଘଣ ଠିଙ୍କି ଗିଳ କାହିଁକି କରୁଛ ?

୧୬୧ । ବାନାବାନ୍ଧିବା—ସୁଖ୍ୟାତି ଲାଭ କରିବା । ଭଗବାନ ପତିତ ପାବନ ବାନା ବାନ୍ଧିଛନ୍ତି ।

୧୬୨ । ବାଟକାଟିବା<br>ବାଟକରିବା } —ନିଜ ଉପାୟ ସ୍ଥିରକରିବା । ବେଳ ପଡ଼ିଲେ ସେ ଯାହାର ବାଟ କାଟିବେ ।

୧୬୩ । ବାଗକୁ ଆଣିବା—ସଜାଡ଼ିବା, ସେ ବଡ଼ ଅବାଗିଆ ଥିଲା । ମୁଁ ବହୁ କଷ୍ଟରେ ତାକୁ ବାଗକୁ ଆଣିଲି ।

୧୬୪ । ବରାଡ଼ ଛିଙ୍କିବା—ଅନୁକୂଳରେ ବିଘ୍ନ ଘଟିବା । ଫେରିଲେ କାହିଁକି, ବରାଡ଼ ଛିଙ୍କିଲା କି ?

୧୬୫ । ବିଶ୍ୱାସରେ ବିଷଦେବା—ବିଶ୍ୱାସ ଘାତକତା କରିବା । ସେ ବିଶ୍ୱାସରେ ବିଷ ଦେବବୋଲି ମୁଁ ଜାଣି ନଥିଲି ।

୧୬୬ । ବିରାଡ଼ି କପାଳକୁ ଶିକା ଛିଡ଼ିବା<br>ମନ୍ତୁ ଖୋଜୁଥିଲା ଯାହା,<br>ବଇଦ ବତାଇଲା ତାହା } ଇଚ୍ଛାମତେ ସୁଯୋଗ ମିଳିବା ।

୧୬୭ । ଭାଲୁ ଧରାଇବା<br>ହରଡ଼ ଘଣାରେପକାଇବା<br>ହରି କାଠରେ ପକାଇବା } କୌଶଳକ୍ରମେ ଅନ୍ୟକୁ ଜଞ୍ଜାଳରେ ପକାଇବା—ଗୁନ୍ଦା ଦେବେବୋଲି ସମସ୍ତେ ହିଁ ଭରି ଯେଝାଘରେ ରହିଲେ, କିନ୍ତୁ ମୋ ହାତରେ ଗୁନ୍ଦାବନ୍ଧିଟି ଦେଇ ମୋତେ ଭାଲୁ ଧରାଇଲେ ।

୧୬୮ । ଭେଳା ବୁଡ଼ିବା—ସର୍ବନାଶ ହେବା

୧୬୯ । ଭିକତ ଦେବ ନାହିଁ, ଆଉରି ଥାଳ ଭାଙ୍ଗି ଦେବେ—ସର୍ବନାଶ କରିବା ।

୧୭୦ । ଭୂଆଁ ବୁଲାଇବା—ଉଦ୍ଦେଶ୍ୟହୀନ ଅବସ୍ଥାରେ ବୁଲିବା ବା କାମ କରିବା ।

୧୭୧ । ଭୂତ ଲଗିବା—ବାଯୁଗ୍ରସ୍ତ ହେବା ।

୧୭୨ । ଭୂତ ଖାଇବା— ଅପବ୍ୟୟ ହେବା । ଥୋଇଲାଧନ ତୋର ଭୂତ ଖାଇବେ । ( ମନବୋଧ ଚଉତିଶା ) ।

୧୭୩ । ମହୁରଗରୁ ଯାଇ କାନ୍ତାରରେ ପଡ଼ିବା—ସାମାନ୍ୟ ବିପଦରୁ ଯାଇ ବଡ଼ ବିପଦରେ ପଡ଼ିବା । ସେଠି ହେଲେ କିଛି ମିଳୁଥିଲା, ଏଠିତ କିଛି ନାହିଁ । ମନୁଷ୍ୟ ଅଳ୍ପା ମହୁରଗରୁ ଆସି କାନ୍ତାରରେ ପଡ଼ିଲା !

୧୭୪ । ମନ ଘର ଧରିବା—ବିପଦ ଉପଲବ୍ଧି କରିବା । ଏଥର ଜେଲଯାଇ ତା ମନ ଘର ଧରିଗଲା ।

୧୭୫ । ମାଛ ତେଲରେ ମାଛ ଭାଜିବା—ବିନା ଖର୍ଚ୍ଚରେ କାମ ଉଠାଇବା ।

୧୭୬ । ମାମୁଁ ଘରକୁ ଯିବା—ଜେଲ ଯିବା ।

୧୭୭ । ମାସ ଗଡ଼ିବା—ଗର୍ଭ ଉଦୟ ହେବା ।

୧୭୮ । ମୁଣ୍ଡ ଉପରେ—ଅତି ନିକଟରେ ।

୧୭୯ । ମୁଣ୍ଡକୁ ହାତ ପାଇବା— ଉପାର୍ଜନକ୍ଷମ ହେବା ।

୧୮୦ । ମୁଣ୍ଡଲଗିବା—ଶେଷ ହେବା । ଏତେଦିନେ କୋଠାକାମ ମୁଣ୍ଡ ଲଗିଲା ।

୧୮୧ । ମୁଣ୍ଡରେ ବଜ୍ରପାତ—ହଠାତ୍ ଭୀଷଣ ଦୁର୍ଘଟଣା । ପୁଅର ଆକସ୍ମିକ ମୃତ୍ୟୁ, ମା ମୁଣ୍ଡରେ ବଜ୍ରପାତ ।

୧୮୨ । ମୁଣ୍ଡଝାଳ ଭୂଇଁରେ ମାରିବା } କଠିନ ପରିଶ୍ରମଦ୍ୱାରା
ତାଳୁଝାଳ ତଳପାରେ ମାରିବା } ପେଟ ପୋଷିବା ।
ଚଷାଭାଇ ମୁଣ୍ଡଝାଳ ଭୂଇଁରେ ମାରି କୌଣସିମତେ ଦିନ କାଟେ ।

୧୮୩ । ମୁଣ୍ଡକୁ ତେନ୍tuଳଆ ବଗ୍ଧ କାମୁଡ଼ବା—ବିଷମ ଚିନ୍ତାରେ ପଡ଼ବା । ମହାଜନ ଦେଣା ନ ସୁଝିଲେ କାଲ ସକାଳେ ଦାଣ୍ଡ ଦୁଆରେ ଢେଙ୍କୁରା ବାଜବ । ତେଣୁ ହରସାହୁ ମୁଣ୍ଡକୁ ତେନ୍ତୁଳିଆ ବଗ୍ଧ କାମୁଡ଼ୁଛି ।

୧୮୪ । ମୁଣ୍ଡଗୁଞ୍ଜିବା—ବାସ କରିବା । ତାର ମୁଣ୍ଡଗୁଞ୍ଜିବାକୁ ଠାବ ନାହିଁ ।

୧୮୫ । ମୁଣ୍ଡଟେକିବା—କାମରେ ଆଗେଇବା । ପୂଅଟି ପାରିବାରୁ ଏବେ ସେ ଟିକିଏ ମୁଣ୍ଡ ଟେକି ଆସୁଛନ୍ତି ।

୧୮୬ । ମୁଣ୍ଡବଥାଇବା—ଚିନ୍ତାହେବା । ଯାହାର କାମ ସେତ ଫୁଲଫାଙ୍କିଆ ହୋଇ ବୁଲୁଛି; ତୋର ମୁଣ୍ଡ ବଥାଉଛି କାହିଁକି ?

୧୮୭ । ମୁଣ୍ଡରେ ପଶିବା—ବୁଝିବା । ଏହି ଅଙ୍କଟି ମୋ ମୁଣ୍ଡରେ ପଶୁନାହିଁ ।

୧୮୮ । ମୂତରେ ଦୀପ ଜଳିବା—ଇଙ୍ଗିତରେ ଇଚ୍ଛାମତେ କାର୍ଯ୍ୟ ସିଦ୍ଧହେବା । ମଧୁବାବୁ ବାରିଷ୍ଟର, ତା କଥା କଣ କହିବା; ତା ମୂତରେ ଦୀପ ଜଳୁଥିଲା ।

୧୮୯ । ମୁହଁଭାଙ୍ଗି ଦେବା—ଅଭ୍ୟାସ ଭାଙ୍ଗି ଦେବା । ଦୁଷ୍ଟ ପିଲାଙ୍କର ମୁହଁ ଭାଙ୍ଗି ନ ଦେଲେ ସେମାନେ ମଣିଷ ହେବେ ନାହିଁ ।

୧୯୦ । ମୁହଁ ବଢ଼ାଇବା—ପ୍ରଶ୍ରୟ ଦେବା । ତୁମେତ ଚାକରମାନଙ୍କ ମୁହଁ ବଢ଼େଇଛ, ଆଉ ଏତେବେଳେ ଭାବିଲେ କଣ ହେବ ?

୧୯୧ । ରକ୍ତ ଗୁଳିଲ ଫୁଟେଇବା—ରାଗରେ ଜରଜର ହେବା, ମୋତେ ଦେଖିଲାକ୍ଷଣି ସେ ରକ୍ତଗୁଳିଲ ଫୁଟାଉଛି ।

୧୯୨ । ଗୁହା ଧରିବା—ଏକ ନିଶ୍ୱାସରେ କାନ୍ଦିବା । ସେ ପିଲାଟିକୁ ଧରି ନିଅ, ସେ ପଡ଼ିଯାଇ ଗୁହାଧରି କାନ୍ଦୁଛି ।

୧୯୩ । ଗଣ୍ଡିପୁଅ ଅନନ୍ତା } ସେ ଅଣଆପୁତ୍ର—
ଗୁରି ଦଉଡ଼ି କଣ୍ଟା } ସେ ସବୁଦିନେ ଗଣ୍ଡିପୁଅ ଅନନ୍ତା ହୋଇ ବୁଲୁଛି, ତାକୁ ଲଗା ନାହିଁ କି ପଘା ନାହିଁ ।

୧୯୪ । ଲୁହା ଜାଣି ପାଣି ଦେବା—ଯଥାର୍ଥ ବିଚାର କରିବା ।

୧୯୫ । ଲେଞ୍ଜଗୁଡ଼ କଣ୍ଢଣୀକୁ ବାନ୍ଧିଯିବା—କଥା ବଳେଇ ଯିବା । ଆଜି ମୋତେ ଜଣେ କହୁଛି, ଲେଞ୍ଜଗୁଡ଼ କଣ୍ଢଣୀକୁ ବାନ୍ଧି ଗଲାଣି ।

୧୯୬ । ଲଙ୍କାରେ ହରି ଶବ୍ଦ—ଅସମ୍ଭବ କଥା ।

୧୯୭ । ଲଗା ନାଁ ପଘା—ଶାସନ ବା ଶୃଙ୍ଖଳା ନ ମାନିବା, ଗଣ୍ଡିର ଲଗା ନାହିଁ, ଷଣ୍ଢର ପଘା ନାହିଁ ।

୧୯୮ । ଲୁହା ଜାଣି ପାଣି ଦେବା—ଲୋକ ଚିହ୍ନି ବ୍ୟବହାର କରିବା ।

୧୯୯ । ଶଫର ଫରଫର—ସାମାନ୍ୟ କାରଣରେ ଗର୍ବ ପ୍ରକାଶ । ଘରେ ଚୂଲି ଜଳୁ ନ ଥିଲା । ଆଜି ହାତରେ ଦି ପଇସା ପଡ଼ିବାରୁ ଶଫର ଫରଫର ହେଉଛି ।

୨୦୦ । ଶୁଣ୍ଢୀର ସାକ୍ଷୀ ମାତାଲ—ଏକ ପ୍ରକାର କୁକର୍ମରେ ସମ୍ପୃକ୍ତ ବା ଲିପ୍ତ ବ୍ୟକ୍ତିଙ୍କ ସାକ୍ଷ୍ୟ ବିଶ୍ୱାସ ଯୋଗ୍ୟ ନ ହେବା ।

୨୦୧ । ସୁଅ ମୁହଁରେ ବହିଯିବା—ଅଯଥା ନଷ୍ଟ ହେବା ।

୨୦୨ । ହାତ ଧରିବା—ବିବାହ କରିବା ।

୨୦୩ । ହାତ କରିବା—କୌଶଳରେ କବଳକୁ ଆଣିବା ।

୨୦୪ । ହାଟ ଭିତରେ ବ୍ରହ୍ମଜ୍ଞାନ—ବେଶୀ ଲୋକଙ୍କ ଭିତରେ ଗୁପ୍ତ ରହସ୍ୟ ପ୍ରକାଶ କରିବା, ପଣ୍ଡ ପରିଶ୍ରମ ।

୨୦୫ । ହୁଙ୍କାପିଠା—ନବୁଝି ନଶୁଝି କାମ କରିବା ।
୨୦୬ । ହାତରୁ ଖାଇ ଘୋଡ଼ା ଆଗରେ ଦୌଡ଼ିବା—ଅଯଥା
କଷ୍ଟ ସ୍ୱୀକାର କରିବା ।

---

# ଢଗ ଢମାଳି ଓ ପ୍ରବଚନ

## ଅ

ଅତି ଭକ୍ତି ଚୋରର ଲକ୍ଷଣ ।
ଅଜାଡିକୁ ବଣିଜ ଅଡ଼ୁଆ ।
ଅତି ଦର୍ପେ ହତ ଲଙ୍କା ।
ଅତି ଲେମ୍ବୁ ଚିପୁଡ଼ିଲେ ପିତା ।
ଅରକ୍ଷିତକୁ ଦଇବ ସାହା ।
ଅଣ୍ଟାରେ ନ ଥାଏ ଧନ,
ପୁଅ ବାହାକରିବାକୁ ମନ ।
ଅଦା ବେପାର କରି ଜାହାଜର ଖବର ।
ଅଜା, ଗଜା, ବୁଢ଼ା ମେଣ୍ଢ,
ଦୁଧର ଉପର, ଦହିର ଶେଷ,
ମାଛର ମା, ଶାଗର ଝି,
ଏଥିକୁ ନ ଖାଇବ ଖାଇବ କି ?
ଅଧର୍ମ ଧନ ବଢ଼େ ବହୁତ,
ଗଲାବେଳେ ଯାଏ ମୂଳ ସହିତ ।
ଅନ୍ଧ ପାଣିବୁହାକୁ ତିନଜଣ ଲୋଡ଼ା ।
ଅପାଳକରେ ଧଜାଳ ଲକ୍ଷେ ଟଙ୍କା ।

ଅଳ୍ପ ଲୋକର ବସ୍ତ୍ରର ବୋଝ, ତାକୁ ଜାଣିବ କଥା,
ମହର୍ଘ କାଳରେ ଯାଚ ପରଶେ, ତାକୁ ଜାଣିବ ଅଥା ।
ଅଳପ ଚେଷ୍ଟା, ମାଇପ ଖେଷ୍ଟା,
ମାଙ୍ଗୁଆ ବଳଦ ଯା'ର,
ଯମ ଘର ଯାଇ କି ଫଳ ହୋଇବ,
ନିତି ମରଣ ତା'ର ।

ଅପାମାରଙ୍ଗର ଅପାର ଗୁଣ
ତହିଁରୁ ଘଟିବ ମୂଳେ,
ରାମ ଦାତୁଣୀ ସର୍ବସିଦ୍ଧ
ତହିଁରୁ ଘଷିବ ଫାଳେ ।
ସାହାଡ଼ା ସୁନ୍ଦରୀ ଅମୃତ ଭୋଜନ,
ତହିଁରୁ ଘଷିବ ଡାଳେ,
ମୃତ ପନରୁ ସ୍ତ୍ରୀ ଲାଭ,
ଯଦି ପଡ଼ିଥିବ ତଳେ ।

ଅନ୍ଧାର ଘରେ ବାଡ଼ି ବୁଲାଇବା ନ୍ୟାୟ ।
ଅନ୍ଧାର ରାତି, କେହି ନ ଜାଣନ୍ତି କାହାର ଜାତି ।
ଅଭିଆଣରେ ଭିଆଣ ଦେଖ,
ପେଜପିଆଠେଇଁ ବାଜୁଛି ଶଙ୍ଖ ।
ଅଶୋକା ନାଣ୍ଟ ବାପ ଘର ଯାଏ,
ମନ ଫୁଲଣା ଗୀତ ଗାଏ ।
ଅଖ ଘୂରୁଥାଏ, ଚକ ଘୂରୁଥାଏ
ଘୂରି ପଡ଼ୁଥାଏ ମହୀ,
ସଂସାର ଭିତରେ ଢେର କରିଥିଲେ
ପଥର ପଡ଼ିଲେ ସହି ।

ଅନ୍ଧ ଆଗେ ଦୀପ, ବଧିର ଆଗେ ଗୀତ ।
ଅନ୍ଧର କି ଦିନ, କି ରାତ ।
ଅଣ୍ଡି ଛୁଞ୍ଚି ତଣ୍ଡି କାଟେ ।
ଅମିନ, ଜାମିନ, ମଧ୍ୟସ୍ଥି,
ଏଥୁ। ନ କରିବ ଅଗସ୍ତି ।
ଅକର୍ମା ଯେଣେ ଯାଏ,
ଭାଗ୍ୟ ଯେଣେ ବୁଲୁଥାଏ ।
ଅଳସୁଆ କରମକୁ ଗଙ୍ଗା ବଳେ ।
ଅରଟର ଘାଇଁ ଲୋ ବୁଢ଼ୀ, ତୋ ସୂତା ନଟିକ କାହିଁ ?
ଜାଣିନାହୁଁ କରେ କାଠେଇଖିଆ, ମୁଁ ନିତ ହାଟକୁ ଯାଇ ।
ନିତି ହାଟକୁ ଯାଉଲୋ ବୁଢ଼ୀ, ତୋ କଉଡ଼ି ବୁଜୁଳି କାହିଁ ?
ଜାଣି ନାହୁଁ କରେ କାଠେଇଖିଆ, ମୁଁ ନିତ ପାନଗୁଆ ଖାଇ,
ନିତି ପାନ ଗୁଆ ଖାଉଟଲୋ ବୁଢ଼ୀ, ତୋ ଦାନ୍ତ ରଙ୍ଗିଆ କାହିଁ ?
ଜାଣିନାହୁଁ କରେ କାଠେଇଖିଆ, ମୁଁ ନିତ ପଖାଳ ଖାଇ ।
ନିତି ପଖାଳ ଖାଉଲୋ ବୁଢ଼ୀ, ତୋ ପେଟ ଡ଼ୁମୁରୁ କାହିଁ ?
ଜାଣି ନାହୁଁ କରେ କାଠେଇଖିଆ, ମୁଁ ନିତ ବାଡ଼ଘର ଯାଇ ।
ଅତି ନୋହିବ ଡେଙ୍ଗ ସରସର,
ଅତି ନୋହିବ ବାଙ୍ଗର,
ଅତି ନୋହିବ ତେଲ ସରସର,
ଅତି ନୋହିବ ମାଖର ।

## ଆ

ଆଟଲି ମଉସା, ଜଡ଼ ପଇସା ।
ଆଗ ଚାଲି, ଆଗ ବୋଲି,

ପର ଗାଈ ଦୁହାଁ, ବଛ ପେଲ,
ଏ ଗୃହ ନୁହନ୍ତ ଭଲ ।
ଆଖିଫୁଟା ସହିବା, ଅଞ୍ଜନ ଲଗା ନ ସହିବା ।
ଆଖି ଫୁଟୁ, କଥା ଯାଉ ।
ଆରେ କାଉ, ମଲ ଉପରେ ଶଗଡ଼ ଯାଉ, କ ସକଳ ଯାଉ ।
ଆଲୋ ସଖୀ, ଆପଣା ମହତ ଆପେ ରଖି ।
ଆଖି ବଡ଼, ପେଟ ଶ୍ରେଟ ।
ଆଗେ ଗୃନ୍ଦ, ପଛେ ଗୃନ୍ଦ,
ତାକୁ ନେଇ ମହି ଖୁଣ୍ଟରେ ବାନ୍ଧ ।
ଆଗ୍ରେରେ ଲକ୍ଷ୍ମୀ, ବଗ୍ରେରେ ପଣ୍ଡିତ ।
ଆମ୍ବ କଡ଼ମଡ଼, ତେନ୍ତୁଳ ଚେମଡ଼ ।
ଆଜ ମଲେ କାଲକ ଦୁଇଦନ ।
ଆଗତପଞ୍ଚା, ସବୁ କଞ୍ଚା ।
ଆଗେ ତେନ୍ତୁଳ, ପଛେ ତାଳ,
ଘର ଗୋସେଇଁର ପୂରଇ କାଳ ।
ଆପଣା ସୁନାତ ଭେଣ୍ଡି, ପରସାଙ୍ଗେ କାହିଁକ ବାଳ ଧର୍ାଧର ।
ଆଳୁକୁଚ ଖା, ସାରୁକୁଚ ଖା,
ଅନ୍ଧ ପର କଏ ହୋଇବ ?
ମାଉସୀ ବୋଲ, ପିଉସୀ ବୋଲ,
ମା ପର କଏ ହୋଇବ ?
ଆଙ୍ଗୁଳ ଦେଖାଇଲେ ବାହା ଗିଳନ୍ତ ।
ଆଜ କଥା କାଲକ ଅନ୍ତର ।
ଆପେ ଭଲ ତ ଜଗତ ଭଲ ।
ଆପ ରୁଚ ଖାଇବ, ପର ରୁଚ ପିନ୍ଧିବ ।

ଆମ୍ବ ଖାଇବା ପୁଅକୁ ,
ଟାକୁଆ ଭଣ୍ଡାଇବା ନ୍ୟାୟ ।
ଆମ୍ବ, ପଣସ, ଅଡ଼େଇଦନ, ଏହା ଯେବକର ମଣଷ ଚାଲ୍ଲି ।
ଆସୁଥିଲା କଥା ବାହୁଡ଼ ଗଲା,
ଦେଢ଼ଶୁର ଥାଇ ଅଡୁଆ କଲା ।
ଆଙ୍ଗୁଠି ସନ୍ଧରେ ମଲି,
ଭଡରେ ଭିତରେ ସଲ୍ଲ ସୁତର, ଲୋକ ଦେଖାଣାକୁ କଳି ।
ଆଖି ଥାଉ ଥାଉ ଅନ୍ଧ ।
ଆପଣା ବୁଦ୍ଧିରେ ଭକାଗ ହେବ ପଛକେ,
ପର ବୁଦ୍ଧିରେ ରଜା ହେବ ନାହିଁ ।
ଆପଣା ଆପଣା ରାଜ,
କ କରବ କାଜୀ ।
ଆ' କୁରଡ଼ି ବେକରେ ବସ୍ ।
ଆ' ବଳଦ, ମତେ ବାନ୍ଧ ।
ଆରେ ରେ, ଯେତେବେଳେ ଯେ ।
ଆଳୁ ଖୋଳୁ ଖୋଳୁ ମହାଦେବ ।
ଆୟୁ ଥିଲେ ମାରବ କଏ ?
ଆୟୁ ନ ଥିଲେ ରଖିବ କଏ ?
ଆଖୁ, କାକୁଡ଼. ନଡ଼ଆ, ମକା,
ଦାନ୍ତ ପଡ଼ିଗଲେ ତଳକୁ ପକା ।
ଆରେ ଭାଇ, ଅର୍ଜି ପାରଲେ ଗର୍ଜି ଖାଇ ।
ଆମ୍ବିଳ ଜାଉକୁ ନ ମିଳେ ଲୁଣ,
ଦାଣ୍ଡରେ ବଖାଣେ ତନ ତଅଣ ।
ଆମ୍ବୁଲ ମାଠିଆ ଯେଉଁଠି,
ବୁଢ଼ା ଗଡ଼ ଗଡ଼ ଯାଇ ସେଇଠି ।

ଇ

ଇତର କଥାରେ ଭିତର ଜଳେ ।

ଈ

ଈଶ୍ୱର କଲେ ଦୁବ ଦାନ୍ତ ହୁଏ ।
ଈଶ୍ୱର ସବୁ ସହନ୍ତି, ଗନ୍ଧ ସହନ୍ତି ନାହିଁ ।

ଉ

ଉଇ, ଓଉଳ, ପିମ୍ପୁଡ଼ି, ମୂଷା,
ଏହି ଚୂଳଜାତି ସଙ୍ଗଇ ବସା ।
ଉଡ଼ିଗଲା ଚଢ଼େଇର ପର ଗଣିବା ।
ଉଚ ଗଛ ତୋଫାନକୁ ଡର ।
ଉଙ୍କେଇଯିବ, ମାରିବ ନାହିଁ,
ଗୋଡ଼େଇଥିବ, ଧରିବ ନାହିଁ ।
ଉଲୁରା ଚୂଳ, ମୁକୁଳା ବାଳ,
ଏହା ନ ରହିବ, ବହୁତ କାଳ ।
ଉଲଟିଲା ଘର, ମଙ୍ଗୁଳିଲା ବର, ରହେ ନାହିଁ ।
ଉଭା ଚାଳ, ଫୋଟା ଶାଳ,
ରୁଅ ହେନ୍ତାଳ, ଗଣ୍ଡ ବେତାଳ
ଘରଣୀ ଚେତାଳ, ତେବେ ସେ ଘର ଯାଏ ଅପର କାଳ ।
ଉକୁଣୀ ସକାଶେ ବାଳ ପକାଇଲ,
ସଉତୁଣୀ କହେ ନାଣ୍ଡୀ,
ଛ ମାସ ହେଲଣି ଆଇଁସ ଛୁଉଁଲ,
ସଇଲା ସୁଢୁଆ ହାଣ୍ଡି ।

# ଊ

ଊଣା ଶ୍ଳୋକ ପଦ ପାଏ,
ହଜଗଲେ ଗୀତ ଗାଏ ।
ଏକ ଲେଖା ଶହେ ଭୁକା ।
ଏ ମନ ପାଞ୍ଚୁଥାଇ ଯାହା,
କାଳେ ପ୍ରାପତ ହୁଏ ତାହା ।
ଏକା ମାଧିଆ ବାଇଶ ପଳ ।
ଏକ ହାତରେ ତାଳି ବ.ଜେ ନାହିଁ ।
ଏଣୁ ମାଇଲେ ବ୍ରହ୍ମ ହତ୍ୟା,
ତେଣୁ ମାଇଲେ ଗୋହତ୍ୟା ।
ଏଣ୍ଡି ବୀଜରୁ ଏଣ୍ଡ ତରୁ,
ହସି ବୋଇଲେ ରଜା କୁହୁ ।
ଏକା ନଣ୍ଡ ପଚିଶ କୋଷ ।
ଏଣ୍ଡୁଅ ଦଉଡ଼ ଶିଙ୍ଘ ବାଉଡ଼ଯାଏ ।
ଏଇ କଥାକୁ, ନାଆ ପେଲି ଦେଲି କଲକତାକୁ ।
ଏକ କୁଟା ଶ୍ୱଶୁର ଘରେ ଜ୍ୱାଇଁ,
ଏକ କୁଟା ଭଉଣୀ ଘରେ ଭାଇ ।
ଏକ ପା ନ ଖାଏ ଭୋଗୀ,
ଦୁଇ ପା ନ ଖାଏ ରୋଗୀ,
ତିନ ପା ନ ଖାଏ ମୂଲିଆ ବାପୁଡ଼ା
ସ୍ୱର ପା ନ ଖାଏ ଯୋଗୀ ।
ଏକ ଆଖି ଆଖି ନୁହେଁ,
ଏକ ସାକ୍ଷୀ ସାକ୍ଷୀ ନୁହେଁ ।

୮

ଏବୁ ଏଡ଼େ, ପାଣି ପଡ଼ିଲେ ହେବୁ କେଡ଼େ ?
ଓଠ ମୁହଁକୁ ଜବ ।
ଓଢ଼ଣା ପଡ଼ୁଛୁ ନାକ ସଳଖ,
ଭୁଣ୍ଡ ଶୁଖୁଛି, ଚଗପାଡ଼ିକ ।
ଓଧ ସଙ୍ଗେ ଭୁଆ ଝଗଡ଼ ବାଇ ।
ଓଲୁଅ କହଇ ବଣ ସାରୁକୁ,
ତୁ ମୁଁ ଯିବା ବାହା ଘରକୁ ।

ଔ

ଔଷଧ ଗଳରେ ଚାଟିଆ କାମୁଡ଼ା ।

କ

କୁସୁମ ପରଶେ ପଟ ନସ୍ତରେ ।
କହୁଛୁ ଯେତେ, ନୋହୁ ତୁ ସେତେ ।
କାନ୍ଥ ନ ଜାଣି କଣ୍ଟଣର ଦୋଷ ।
କଂସାରି ଘରର ପାଗ,
କୂଳ ଡାଉଁ ଡାଉଁ ଜଗ ।
କଳୀ ଗାଈର ଭଳେ ଗୋଠ ।
କଥା ମାଲଲେ ମୋଟ,
ସୂତା ମାଲଲେ ସରୁ ।
କାଳକ ଯାକ ଥିଲୁ ବସି,
ଆଷାଢ଼ ମାସରେ ଫାଟୁଛୁ ଘଷି ।
କଚରା ଯୋଡ଼ିଲେ ଯମ ନ ଛୁଡ଼େ ।

କେଉଟ ବାହେ ମାଛ, ଖାଏ କଙ୍କଡ଼ା ।
କର୍ପୂର ଗଲ୍ଣି ଉଡ଼ି,
କନାଟା ଅଚ୍ଛି ପଡ଼ି ।
କଥାରେ ପେଞ୍ଚ ଅଛି,
ଗୃଳକୁ ଜର କରିଛି ।
କାହିଁ ଗଣି, କାହିଁ ଚନ୍ଦ୍ରଭାଗଣି ?
କହୁ ଦେଉଥାଏ ପରକୁ,
ବୁଦ୍ଧି ନ ଆସଇ ଘରକୁ ।
କହୁ ପୋଛି ଜାଣେ ଯେ,
ଗୃନେଇ ଚଙ୍ଗୁଡ଼ି ଧରେ ସେ ।
କହୁ ଜାଣିଲେ କଥା ସୁନ୍ଦର,
କୁଣ୍ଡାଇ ଜାଣିଲେ ମଥା ସୁନ୍ଦର ।
କହୁ ନ ଜାଣିଲେ କଥା ଅଡ଼ୁଆ,
ଧରି ନ ଜାଣିଲେ ସୂତା ଅଡ଼ୁଆ ।
କହିଲେ କୁଳ କୁଟୁମ୍ବକୁ ଲଜ,
ନ କହିଲେ କୁଳ ଭସି ଯାଉଛି ।
କୂଅକୁ ଝର, ଦୁଧକୁ ସର ।
କବ କୁଣ୍ଡ, ମେଣ୍ଢା ମୁଣ୍ଡ ହଟେ ନାହିଁ ।
କାହାର ପୁଷ ମାସ,
କାହାର ସର୍ବନାଶ ।
କାଲିଠାର କାଲି ମା ଜାଣେ ।
କରୁ ଯେବେ ଡରୁ କାହିଁକି,
ଡରୁ ଯେବେ କରୁ କାହିଁକି ?

କାଣୀ ଆଖିରେ କଜଳଗାର ।
କାଣୀ ଗାଈର ଭିନେ ଗୋଠ ।
କାଣୀ ବଗଡ଼ କୁଜ ଅସରପା ଉପରକୁ ବାଇ ।
କୁଞ୍ଜୁକୁଞ୍ଜିଆ ମାଗୁର ନଣା
ଝିଆରେ ନ ଥାଏ ବାଳ,
ଏକ ଆଣିଆକୁ ପରତେ ନ ଯିବ,
ବଞ୍ଚିଥିବ ଯେତେ କାଳ ।
କାଣୀ ହେବାରୁ ଦୁଃଖ ନାହିଁ,
ବାଣୀ ହେବାରୁ ସୁଖ ନାହିଁ ।
କୋଣେ ଗଲେ ପୋଷେ ମିଳେ ।
କାଇଁଶ ଫୁଲିଲେ ମରେ,
ମଣିଷ ଭୁଲିଲେ ମରେ ।
କାନ୍ଧରେ ପଡ଼ିଲେ ବଜାଇ ଶିଖନ୍ତି ।
କୋଳ ଖାଇ କୋଳ ମଞ୍ଜି ପୋତୁଛି ।
କୁଆ ଉଡ଼ିଲୁବେଳକୁ ତାଳପଡ଼ିବା ନ୍ୟାୟ ।
କୁଆକୁ ବାଟ ନାହିଁ,
ଅନ୍ଧାରକୁ ଘାଟ ନାହିଁ ।
କୁଆ ବସାରେ ଡାମଣା ପଶିବା ନ୍ୟାୟ ।
କଏ ସାତ କଏ ସତର,
କଏ ନଦୀ କଏ ପଥର ।
କେଉଁ ବଗକୁ ଦୁଇ ଗୋଡ଼େ ଅଳତା ?
କେଉଁ କଥାକୁ,
ନାହିଁ ପେଲିଦେଲି କଲିକତାକୁ ।

କୁଳ ବୁଡ଼ିବାର ଏମନ୍ତ ଗୀତ,
ଅଜା ଥାଉଁ ଥାଉଁ ମରଇ ନାତି ।
କୁଳ ବୁଡ଼ନ୍ତା ବେଳକୁ ଘୋଡ଼ାମୂହାଁ ପୁଅ ଜନ୍ମ ।
କମ୍ବଳରୁ ବାଳ ବାଛିବେ କେତେ ?
କୁକୁର ଲାଙ୍ଗୁଳ ବାର ବର୍ଷରେ ସଳଖ ହୁଏ ନାହିଁ ।
କଅଁଳ କାକୁଡ଼ି, ବହଳ ଦୈପା,
କାଟିଦେଲ ପରିବାକୁ;
ଅଳପ ଧନକୁ ବହୁତ କଥା
ଝୁରି ଝୁରି ମରିବାକୁ ।
କୁମ୍ଭାର ବନ୍ଧୁ, ଝାଟିକ ନଗଲେ, ମାଟିକ ଯାଉ ।
କହିବ ନାହିଁ, କହିଲେ ଏ ଘରେ ରହିବ ନାହିଁ ।
କାଲିକା ସୁଆଦ ପାଇଛି,
ଗାତରୁ ଉଠି ଧାଇଁଛି ।
କରମ ଗୁଣେ କରମଙ୍ଗା ଫଳେ,
ଲାଉ ଲଗାଇଲେ ଚଳଣା ଫଳେ ।
କାଉଁରିଆ କାଠି, ଭାଙ୍ଗିବ ପଛକେ ନଇଁବ ନାହିଁ ।
କାହା କରମକୁ କ୍ଷୀର କ୍ଷୀରସା, କାହା କରମକୁ ଲଡ଼ୁ;
କାହା କରମକୁ ଖାରିଆ ଖଡ଼ା, ଚୋବାଇ ଚୋବାଇ ମରୁ ।
କଡ଼ାକେ ଚରି, କଡ଼ାକେ ମରି,
କଡ଼ାଏ କଉଡ଼ି ବେଉନ୍ତ ପାରିଲେ
ସୁନା କଳସରେ ଚାଉଳ ମାରି ।
କେତେ ଧନକୁ କେତେ କଥା,
ଅବର ଘରକୁ ଗବର ବତା ।

କରନ୍ତି ଅଙ୍ଗେ ଅନେକ ଗ୍ଣପ,
କେହ୍ବ ନ ଜାଣେ ଭିତର ପାପ ।
କାନ ଥିଲେ ସୁନା ନାହିଁ,
ସୁନା ଥିଲେ କାନ ନାହିଁ ।
କଦଳୀ ମଞ୍ଜା ହେଲେ ସାର,
ଭଣ୍ଡାକୁ କଲେ ଘରୁ ବାହାର ।
କଙ୍କଡ଼ା କଣିଆ କହ୍ବଲ୍ ବା',
ମୂଳ ଲେଜ ଖାଇ ବଞ୍ଚ ନେ ମା' ।
କଦଳ, ବାଉଁଶ, କଥା,
ଏ ତିନରୁ ନାହିଁ ପରଖିଆ ।
କେଉଁଠି ହାଣ୍ଡି ଗଳଯାଏ,
କେଉଁଠି ପିମ୍ପୁଡ଼ି ଯିବାକୁ ବାଟ ନଥାଏ ।
କଣ୍ଟା ଫିରକ, କଣ୍ଟା ଫିରକ,
ଏତେ ଗୁଣ ବୋଲ ଜାଣିଥିଲ କ ?

ଖ

ଖିର୍ ମା ଖରେଇ ଦେ,
ଚନ୍ଦନ କାଠ ଘୂରେଇ ଦେ,
ମୋ ଲୁଗା ଶୁଖାଇ ଦେ ।
ଖାଇ ବସିଲେ ନଈବାଲି ସରେ ।
ଖାଇବାକୁ ଦେଲେ ହେଲେ,
ନାମ ରହିଥିବ କାଳେ ।
ଖଣ୍ଡିଗଣିଆର ଦ୍ବିଗୁଣ ସରେ,
ଆଣ୍ଠିକାଚୂହାଁର ମାଇପ ମରେ ।

ଖଡ ଗଦାରେ ପଦ୍ମ ଫୁଟିବା ନ୍ୟାୟ ।
ଖର ବଳଦ ମଇଳ, ପଖାଳ ଘଡ ଦଣ୍ଡକ ।
ଖଜୁରୀ ଗଛର ମୂଳରୁ ପାଉଚ ।
ଖସିଲେ ବସ୍ତ୍ର ଘଷିଲେ ଟଙ୍କା,
ବାସିଲେ ମାଉଁସ ନ ଯାଏ ଢକା ।

ଖର୍ବ ସଦେ ମେରୁ,
ଖର୍ବ ସଦେ ଗୋରୁ,
ଖର୍ବ ସଦେ ମୂଳଆବାପୂଭା,
ଖର୍ବ ସଦେ ତରୁ ।
ଖାଇବ ପିଠା, ଗାଇବ ଗୀତା,
ତେବେ ହୋଇବ ଜଗତଜିତା ।

ଖାଇବା ଛଳରେ ମଣ୍ଡା,
ମଣିଷ ଯାକରେ ଲଣ୍ଡା,
ମଇଁଷି ଯାକରେ ପଣ୍ଡା,
ଗାଆଁ ଯାକରେ ଦଣ୍ଡା,
ପଶୁ ଯାକରେ ଗଣ୍ଡା,
ହତିଆର ଯାକରେ ଖଣ୍ଡା,
ଏ ସବୁ ବଡ଼ ହୁଣ୍ଡା ।
ଖୁଣ୍ଟ ବଳେ ଘୋଡ଼ା ଚଳେ ।
ଖାଇଲେ ଜାତି ଯାଏ ନାହିଁ,
କହିଲେ ଜାତି ଯାଏ ।
ଖୋଳ ପରବତ, ମାରେ ମୂଷା ।
ଖାଇବ ସଅଳ, ଶୋଇବ ଆଗେ,
ଉଠିବ ସକାଳେ, ଘୂଲିବ ବେଗେ ।

ଖାଇ ନ ଜାଣି ଘିଅର ଦୋଷ,
ଦେଇ ନ ଜାଣି ପରର ଦୋଷ ।
ଖାଇ ହଗା ଯାଚ ମଗା
ଏ ଦୁଇଟା ହତଭାଗା ।

ଖାଉ ଭଲ କର ମାଜ ଛାଡ ଭଲ କର ମାଜ,
ରଜା ଜାଣିଲେ ପରଜା ଜାଣିଲେ
ଆଉ କାହିଁପାଇଁ ଲାଜ ।

ଖାଇଲା ପୁଅ ଝିଅ ରଙ୍କ ।
ଖାଇବା ପତରେ ଧୂଳି ପକାଇବା ।
ଖଇଲିଆ ବୋଲେ ପାଠଇଲିଆକୁ
"ଦେଖ ମୋର ଗୁଣ,
ତୁ, ମୁଁ ଦୁହେଁ ସାଙ୍ଗ ହୋଇଲେ,
ଗୋସେଇଁ ଖାଇବା କାଳ ।"

ଗ

ଗଧମ ଗୋଳି ଗଣିଚା ।
ଗୁହ କାଢ଼ି ଯାଇ ନାକରେ ହାତ ।
ଗୁହକୁ ମାଇଲେ ମୁହଁକୁ ପଡ଼େ ।
ଗାଁ କନିଆ ସିଙ୍ଘାଣି ନାକ ।
ଗୁଣକୁ ପୂଜା, ଅବଗୁଣ ହେଲେ ବାଇଦ ବଜା ।
ଗରଜିଲା ମେଘ ବରଷେ ନାହିଁ,
ଭୁକିଲା କୁକୁର କାମୁଡ଼େ ନାହିଁ ।
ଗରଜିଲା ବାଘ ମଣିଷ ଖାଏ ନାହିଁ ।

ଗୁପ୍ତ ଦାନର ଗୁଣ ବେଶୀ,
ଗୁପ୍ତ ପାପର ଖୁଣ ବେଶୀ ।
ଗାଁ ବାହାରେ ଘର,
ଚୋର, ନଆଁକୁ ଡର ।
ଗଛ ଚଢ଼ି ନ ଜାଣେ ସେ,
କୁଆ ଅଇଁଠା ଖାଏ ସେ ।
ଗଦ ବଢ଼ିଲେ କ ନୂଆଳ ହୁଏ ?
ଗୋଟିକେ ଚଉ,
ଗୋଟିକେ ମନ
ଗୋଟିକେ ଘର ଦୁଆର କର ।
ଗାଁ ପରମଳ (ପରଗୁଣ) ଧୋବା ଭୁଠରୁ ଜଣାପାଏ ।
ଗାଁ ପରମଳ ଧୋବା ଭୁଠରୁ, ବନ୍ଧୁ ପରମଳ ଅଧବାଟରୁ ।
ଗୋଟାଏ ମାଘରେ ଶୀତ ଯାଏ ନା ।
ଗୋଟାଏ ହାତରେ ତାଳ ବାଜେ ନା ।
ଗାଁ ଭନ୍ନେ ଭନ୍ନେ ମଣିଷ ଏକା ।
ଗୋଡ଼ ଖସିଲେ ଜଣେ ମରେ,
ତୁଣ୍ଡ ଖସିଲେ ବଂଶ ମରେ ।
ଗୋଡର କୋଣ୍ଡେ ଯେତେ, ମାଡ଼େ ସେତେ ।
ଗୋଦଷ୍ଟ ଲେ, ଚୋ ଗୋଡ଼କୁ ଅନା ।
ଗୁଆ ଠାଣ ପାନ, ରୁଆ ଠାଣ ଧାନ ।
ଗୁଣମଣି ଗୁଣସାଗର,
ଗୁଣ ରଖିଗଲ ଅଖା ଭିତର,
ଅଖା ଧୋଉଥିବ, ଗୁଣ ଗାଉଥିବ ।
ଗୋରୁ ମାର ଜୋତା ଦାନ ।

ଗୁଣ ଥିଲେ ଗୁଣିଆ,
ସୁନା ଥିଲେ ବଣିଆ ।
ଗଛ ଥାଉ, ଫଳ ପଛକେ ଯାଉ ।
ଗଉଡ଼ ହୁଡ଼ିଲେ ଦିନେ,
ଚଷା ହୁଡ଼ିଲେ ବରଷେ ।
ଗଛର ଗୁଇ, ମଣିଷର ଦାଇ,
ଯହିଁ ପଡ଼େ ତହିଁ ଜଳେଇ ଯାଇ ।
ଗୁଣ ବ୍ୟନ୍ତେ ଧନୁ ବଙ୍କା,
ଚନ୍ଦ୍ର ବଙ୍କା ଦିନେ ଦିନେ;
ଚେନ୍ଦୁଳ ସବଦା ବଙ୍କା,
ମୂର୍ଖ ବଙ୍କା ସବୁଦିନେ ।
ଗରମ ପାଣିରେ ଘର ପୋଡ଼େ ନାହିଁ,
ମଣିଷ ଗାଳିରେ ମଣିଷ ମରେ ନାହିଁ ।
ଗାଁ ଦୋହଲ, ଗାଁ ବେଦେଲ ।
ପିଠା ଖଅଣ, ଝିଅ ମରଣ ।
ଆଗେ ବଡ଼ ଦୁଃଖ, ପଛେ ବଡ଼ ସୁଖ ।
ଗାଈ ନ ବୋଲେ ଗୋସେଇଁ ବୋଲି,
ଗୋସେଇଁ ଧାଇଁଛି ଦୋହଣୀ ଧରି ।
ଗବଗଛ ଖନ କେନା,
ତୋ ଭାଇ ମାରିଲେ ମୋ ଭାଇ ମାରିବ,
ପାଲଟ କନିଆ ସିନା ।
ଗାଧୋଇ ଯିବାକୁ ଅଳସ ଲାଗଇ
କାଖ କର ମୋତେ ନଈ,
ପଥର ପାଇଛେ ବସାଇ ଦେଇଣ,
ପାଣି ଘୂରି ଯୋଡ଼ା ଦଈ ।

## ଘ

ଘରେ ନାହିଁ ଲେମ୍ବୁ ଲୁଣ,
ସଭାରେ ବଖାଣେ ତିନ ଭୁଣ ।
ଘରେ ନ ଥାଇ ଗୃଜଳ ମାଣେ,
ମନେ ମନେ ହାକମ ଜଣେ ।
ଘଇତା ପଛେ ମରୁ,
ସଜଭୁଣୀ ଗଣ୍ଡ ହେଉ ।
ଘର ଦେଖ, ବର ଦେଖ,
କାନ୍ଥ ଭାଙ୍ଗି କୁଜ ଦେଖ ।
ଘରପୋଡ଼ିବେଳେ କୂଅଁ ଖୋଳା ।
ଘରୁ ଖାଇ ଘୋଡ଼ା ଆଗେ ଦୌଡ଼ ।
ଘରର କେହି ନୁହେଁ,
ପିଡ଼ାରେ କୁଆ ବସାଇ ଦଏ ନାହିଁ ।
ଘଡ଼ିକେ ଘୋଡ଼ା ଛୁଟୁଛି ।
ଘର ବୁଢ଼ି ପାଣି ଆଣୁଏ ହେଲାଣି,
ପୁଅ ଲଆଖିଆ ପଣ ଗୁଡ଼ ନାହିଁ ।
କୁମ୍ଭୀର ନେଇ ମଚ୍ଛିନଣ୍ଡରେ କଲାଣି,
ପୁଅମନ ଘର ଧରି ନାହିଁ ।
ଘରେ ନାହିଁ ଖଡ଼ା,
ଆଡ଼ା ଦେଖାଉଛି ଢଗଣ୍ଡା ଢକଡ଼ା ।
ଘର ବୁଢ଼ି ପାଣି ଆଣୁଏ,
ଅନ୍ଧ କହେ ମେଘ ଦୁଲୁକୁଛି ।

କୁମ୍ଭୀର ନେଇ ମଝି ନଈରେ କଲାଣି,
ମା ବୋଲେ ପୁଅ ପହଁରୁଛି ।
ଧୂର୍ତ୍ତର ପ୍ରକୃତି ପଙ୍କେ ଲେଟେ,
ମଣିଷ ପ୍ରକୃତି ମଳେ ଲୁଟେ ।

ଧନୁ ଖାଇ ବଣିଜ ଶିଖିବା ।
ଘୋଡ଼ା ହେଲେ କି ଚବୁକ ପାଇଁ ଅଟକିବ ?
ଧୂର୍ତ୍ତର କି ପାଚଲା କଦଳୀ ?
ଧୂର୍ତ୍ତରିକ କାହିଁ ପାଚଲା କଦଳୀ,

ଅନ୍ଧହାତେ ରତ୍ନ ମୁଦି,
ପେଚ୍ଚ ଚଢ଼େଇ କି ସୁବର୍ଣ୍ଣ ପଞ୍ଜୁରି,
କୋରଡ଼ ସୁମର କାନ୍ଧ ।
ଘରକୁ ସୁନ୍ଦର ଘରଣୀ,
ନଈକୁ ସୁନ୍ଦର ତରଣୀ ।

ଘର ଦେଅଁ ନ ପୂଜି ପରଦେଅଁ ପୂଜିବା ।
ଘର ମାଠ, ଘରଣୀ ମାଠ,
ତିନି ବରଷରେ ପିନ୍ଧଇ ପାଟ ।

ଘାଇ ମୁହଁରେ ପାଉଛି,
ବାଲିକଣା ବୁଜୁଛି ।
ଘୋଡ଼ା ଚଢ଼ିବାରୁ ସମ୍ପତ୍ତି ନାହିଁ,
ଉପାସ ଶୁଆରୁ ଢପତି ନାହିଁ ।
ଘୋଡ଼ା ଦଉଡ଼ ଦଉଡ଼ ଯେଉଁଠି,
ହାଣ୍ଡି ପାତୁଲ ପକାଇ ସେଇଠି ।

ଚାଷ ଚରଚର, ବଣିଜ ମଠ ।
ଚିଲକା ମାଛ, ଆକାଶ କଇଁଆ ।
ଚକୁଳି ଖାଇବ କି ଛନ୍ଦ ଗଣିବ ?

ଚଣା ବେଳକୁ ଦାନ୍ତ ନାହିଁ,
ଦାନ୍ତ ବେଳକୁ ଚଣା ନାହିଁ ।
ଚିଙ୍ଗୁଡ଼ି ଚିପିଲେ ମୁଣ୍ଡରେ ବସ ।
ଚୋରକୁ ମାନକର ଖପରରେ ଖାଇବା ।

ଚୋର ମା ଲାଜେ ନ କାନ୍ଦେ,
ଯନ୍ଦ କାନ୍ଦେ, ଦୁଆର ଦେଇ କାନ୍ଦେ ।
( ଯନ୍ଦ କାନ୍ଦେ, ଆଖି ମଳ ମଳ କାନ୍ଦେ )

ଚୋର ନେଲେ କିଛି ଯାଏ,
ଘର ପୋଡ଼ିଲେ ସବୁ ଯାଏ ।
ଚୋର ପଳାଇଲାରୁ ବୁଦ୍ଧି ଦିଶେ ।
ଚକେ ଗଲେ ବାରହାତ ।

ଚେଇଁ ଶୋଇଥିବ ଯିଏ,
ତାକୁ ଉଠାଇବ କିଏ ?
ଚଟୁ କି ଜାଣେ ତିଅଣ ସୁଆଦ ?
ଚାଖି କହୁଥାଏ ମାଇପ ଆଗେ,
ବୁଦ୍ଧି ନ ଦିଶଇ ପାଇକ ଆଗେ ।

ଚାକଣ୍ଡ ତାଳ ଗଛ ଛୁଇ ।
ଚୋରର ମନ ଗଣ୍ଠିଘରେ ।
ଚୋରଘର କି ସବୁଦିନ ଆଲୁଅ ?

ଛନ୍ଦା ଖାଏ ଗଣ୍ଡି,
ଲୁଣ ଖାଏ ହାଣ୍ଡି ।
ଚୁଚୁନ୍ଦ୍ରା ମାଇଲେ ହାତ ଗନ୍ଧାଏ ।
ଚନ୍ଦ୍ରା ବ୍ରାହ୍ମଣର ପଇତା ଲୋଡ଼ା ନାହିଁ ।
ଚଷା ବୁଢ଼ିଲେ ବରଷେ,
ଗଉଡ଼ ବୁଢ଼ିଲେ ମାସେ,
ପାଠ ବୁଢ଼ିଲେ ପୁରୁଷେ ।
ଚୋରର ମୁହଁ ଟାଣ ।
ଚୁଡ଼ଲ ଢୋଲକ ଓଳଏ କଲି,
ପାଞ୍ଚ କୁଣିଆଁ ଙ୍କ ପାଇଁ;
ଯେତେକ ଖାଇଲ ଲୁଚିଲ ଚୋରାଇ,
ହାଣ୍ଡରେ ଲଗିଲା ନାହିଁ ।

ଛ

ଛୁଇକ ଛତା, ପାଣିକ ଜୋତା ।
ଛାଡ଼ ପିତୃ କାର୍ଯ୍ୟ, କର ରାଜ କାର୍ଯ୍ୟ ।
ଛତୁ ଉଠା କାଠ, ଦାଢ଼ି (ନଣ) ଉଠା ପାଠ ।
ହେଲେ ହୁଏ ଚାଳ, ନଇଲେ ହୁଏ ଜାଳ ।
ଛୋଟୀ ବରାଡ଼ର ଟାଣ କୁଜା ଅସରପା ଉପରେ ।
ଛୋଟ ମୁହେଁ ବଡ଼ କଥା ।
ଛୋଟ ସାପର ବଡ଼ ଭାଗ ।
ଛୋଟୀ ଲୋ, ଗୋଡ଼ ସଳଖେ ପକା ।
ଛୁ ଲୋ ଛତୁ,
ମେଘ ବରଷିଲେ କେତେ ଖାଆନ୍ତୁ ।

ଛେଳି ଗୋଡ଼ରେ ଧାନ ମଳା ।

ଛତା ଟେକିବ ସେ ଆଡ଼େ,
ବରଷା ହେବ ଯୁଆଡ଼େ ।

ଛ'ମାସ୍ତ ଭିନ ପୁରୁଷା, ଯନ୍ତିଁ ଗଲେ ଫସରଫସା ।

ଛଅ ଟଙ୍କାର ଘୋଡ଼ାକୁ ନଅ ଟଙ୍କାର ଦାନା ।

## ଜ

ଜନ୍ମ, ମରଣ, ବରଷା,
ଏହା କହି ନ ପାରେ ପୁରୁଷା ।

ଜଳ ମଧ୍ୟରେ ବାସ କରି କୁମ୍ଭୀର ସଙ୍ଗେ ବିରୋଧ ।

ଜଳ ଗହଳେ ସୃଷ୍ଟି ନାଶ,
ଜଳ ବିହୁନେ ସୃଷ୍ଟି ନାଶ ।

ଜାଣି ପନ୍ଥରେ ଧର୍ମା,
ନ ଜାଣି ନ ପନ୍ଥରେ ଅଧର୍ମା ।

ଜାନ୍ ଯାଉ, ମାନ ଥାଉ ।

ଜିଗରୁ ଶିର ବାହାର କରିବା ।

ଯେସାକୁ ତେସା,
ହାରାମଜାଦାକୁ ଟାଙ୍ଗିଆ ପଣା ।

ଜୋର ଯାର, ମୁଲକ ତାର ।

ଜହ୍ନିଫୁଲର ଆୟୁଷ ପା',
ସଞ୍ଜେ ଫୁଟି ସକାଳେ ଯା' ।

ଜଗନ୍ତି ଉପରେ ବସିଲେ କୁଆ,
ଗରୁଡ଼ ବୋଲି କି ହୋଇବ କୁହା ?

ଜାଅନ୍ତେ ନ ହେଲୁ ଭୁଣ୍ଡେ,
ମଲେ ଦେବୁ ଖାଣ ମୁଣ୍ଡେ ।
ଜାହାଜି ଗୁଆ ସଙ୍ଗରେ ହରଡ଼ା,
ଅଖା ହେବ ବନାରସୀ କପଡ଼ା ।
ଯୁଇ ପୁଷ୍ପ ସଙ୍ଗେ ମାଧବୀ ଫୁଲ,
ସମ କଲେ କି ହେବ ସମତୁଲ ।

ଞ

ଝାଡ଼ବ ଯେତେ, ଝଡ଼ବ ତେତେ ।
ଝିମିଟି ଖେଳନ୍ତୁ ମହାଭାରତ ।
ଝୋଟକୁ ନଆଁ ବାଇ ।
ଝିଣ୍ଟିକା ମାର ବଣି ପୋଷିବା ।

ଟ

ଟଙ୍କାକ ପଛକେ ବାରଣା ହେଉ,
ଯାଇ ଆସେ ପୁଅ ସିଆଣିଆ ହେଉ ।
ଟାଣ କରୁଥାଏ ମାଇପ ଆଗେ,
ଲାଜ ପାଗ ଦେଖି ଘରକୁ ଭାଗେ ।

ଠ

ଠେକର ତେଲ ଠେକରେ ଥାଉ,
ଘୁଅର ବାଳ ଲୁଗ୍ନ ନୋହୁ ।

୩

ଡରୁ ତ କରୁ କାହିଁକି ?
କରୁ ତ ଡରୁ କାହିଁକି ?
ଢେଙ୍ଗା ମୁଣ୍ଡେ ଠେଙ୍ଗା,
ବାଙ୍ଗର ମୁଣ୍ଡେ ଟାଙ୍ଗର ।

୪

ଢମ କହୁଛ କେତେ,
ଢମର କଥା କି ଅଜଣା ମୋତେ ।
ଢୋଲ ଭିତରେ ମୂଷା ।
ଢେଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟେ ।
ଢୋକେ ପିଇ, ଦଣ୍ଡେ ଜୀଇ ।
ଢୋଲ ବାଇଦ କୋଶେ,
ଢୁଣ୍ଡ ବାଇଦ ସହସ୍ର କୋଶ ।
ଢମ କହୁଛି,
ଢଅଟା ଧାନରେ ନଅଟା ଚଉଳ
ଢକଲେ ଘିଅ ବୋହି ଯାଉଛି ।

୫

ତଳ ବରଡ଼ା ଖସୁଛି,
ମଝି ବରଡ଼ା ହସୁଛି
ଉପର ବରଡ଼ା ଥାଇ କହୁଛି,
ତୋ ଦିନ କାଲ ଆସୁଛି ।

ଛଅ ବରଷରେ ଧାନ ବାଜୁଙ୍ଗା,
ଛଅ ପୁରୁଷରେ କୁଳ ବାଜୁଙ୍ଗା ।
ଠପେ ବର କି କୋପେ ବର ।
ଠାଉଲ ପାଣିରେ କି ଘର ପୋଡ଼େ ?
ଭୁଜ୍ଞାଙ୍କୁ ଏତେ
ମୁଦ ନାହିଁ ଗୋଡ଼ କସୃଡ଼ୁ କେତେ ?
ତେଲ ମାଖୁ ମାଖୁ ସରେ
ଗୁଡ଼ ଘୃଷ୍ଟୁ ଘୃଷ୍ଟୁ ସରେ ।
ଡାଳ ପଡ଼ିବାକୁ ମୁଣ୍ଡ ପାତିବା ।
ତୁଳସୀ ଦୁଇ ପତ୍ରରୁ ବାସେ,
କଞ୍ଚୁଆଡ଼ି ଦୁଇ ପତ୍ରରୁ କୁଣ୍ଡାଇ ହୁଏ ।
ତେଲ ହଳଦୀ ସାରନା,
ପୁଅକୁ ମୂର୍ଖ କରନା ।
ତେଲିଆ ମୁଣ୍ଡରେ ତେଲ,
ମୂର୍ଖର ମୁଣ୍ଡକୁ ପେଲ ।
ତେଲ ଲଗାଇବ ହାବୁହାବୁକା,
ଘିଅ ଖାଇବ ଆଗା;
ଶିର ଦେଇ ଶୋଇ ପଡ଼ିବ,
ମାଗି ନେଇଥିବ ଜାଗା ।
ତେଲ, ତମାଖୁ, ମଇଦା,
ଯେତେ ରଗଡ଼ିବ ସେତେ ଫାଇଦା ।
ଭୁଜ୍ଞାଙ୍କୁ ଏତେ,
ମୁଦ ନାହିଁ ଗୋଡ଼ କସୃଡ଼ୁ କେତେ ?
ପିତଳ ଗୁଣାକୁ ନାକ ଟାଉଁ ଟାଉଁ
ସୁନା ଗୁଣା ଥିଲେ ଦେଖାନ୍ତୁ କେତେ ?

ଚେଲ ଘଡ଼ିକୁ ଆଣ,
ପୁଅ ମୁଣ୍ଡକୁ ଆଣ ।
ଚେଲ ଚେଲ ଗଲେ ମିଶି, ପିଢ଼ଆ ପଡ଼ିଲା ଅଲଗା ଖସି ।
ଭୁଣ୍ଡ ନରେନ୍ଦ୍ର, ପିଠି ଅରକ୍ଷିତ ।
ତୁ ମାରନାଁ, ମୁଁ ମଲିଣି,
ତୁ ଘାପ ଲଗାଇ ଦେଖନାଁ, ମୁଁ ଶୁଖା ପୋଇଖାଡ଼ ହେଲିଣି ।

ଥ

ଥାଉ ମାନ, ଯାଉ ଧନ ।
ଥାଉଁ ନ ଖାଉ ପେଟକୁ,
ଥୋଉଛୁ ଯାହା ଥେଣ୍ଟକୁ,
ଥୋଡ଼େ ନେଇ ଯା ବାଟକୁ,
ଥିଲେ ଲାଗିବ ଘାଟକୁ ।
ଥୋଇଛୁ ଯାହା ପର ଲୋକକୁ,
ଦେଇଛୁ ଯାହା ପର ଲୋକକୁ ।
ଥିଲେ ଚଗିକନା ହଜଲେ ମାଠ ।

ଦ

ଘାସ ଚେଜଲେ ହାତ ଚକ୍‌କଣ ।
ଦଳ ଛଡ଼ାଇଲେ କଏ ?
କଉ ଖାଇଲେ କଏ ?
ଦୃଢ଼ ଚରେ, କ ମୃଢ଼ ଚରେ,
ମଝି ମଝିକଆ ବୁଢ଼ ମରେ ।
ଦୂର ପର୍ବତ ସୁନ୍ଦର,

ଦୂର ବନ୍ଧୁ ସୁନ୍ଦର ।
ଦରବ ଦଜଡ଼ ମଣିଷ ଗାଣ୍ଠ,
ଯେଣିକ ଟାଣିବ ତେଣିକ ଯାଇ ।
ଦେବ, ଦଆଇବ, ଦେବା ଘରକୁ ବତାଇ ଦେବ ।
ଦୀପ ତଳ ଅନ୍ଧାର ।
ଦଅଁକୁ ଦେଖାଇ ଦେହୁରୀ ଖାଏ ।
ଦୁଇ ଘରର କୁଣିଆଁ ଭୋକେ ମରେ ।
ଦେଶ କେ ଫାଙ୍କ, ନଷ୍ଟକ ବାଙ୍କ ।
ଦେଇଥିଲେ ପାଇ,
ପଡ଼ିଆ ବିଲରେ ଗୋଧନ ଚରାଇ ।
ଦେବାଠାରୁ ପୁଣ୍ୟ ନାହିଁ,
ମାଗିବାଠାରୁ ହୀନ ନାହିଁ ।
ଦାଣ୍ଡରେ ପୁଅ ବେଇ ଡାହାଣୀକୁ ଡର ।
ଦାନ୍ତୁଆର ହସିବା କାନ୍ଦିବା ଜଣାଯାଏ ନାହିଁ ।
ଦୀପ ତେଜିଲେ ହାତ ଚକ୍‌କଣ ।
ଦୁବ ଲାଗି କାନଶିଆ ପାଣି ପାଏ ।
ଦେ' କଉଡ଼ି ଖା' ପିଠା,
ଏଥିପାଇଁ କିଆଁ ଦାନ୍ତ ନକୁଟା ?
ଦେବା, ମରିବାକୁ କାହାକୁ ଭଲ ଲାଗେ ନାହିଁ ।
ଦୁଧ ଉତୁରିଲେ ଚୂଲିରେ ପଡ଼େ,
ମଣିଷ ଉତୁରିଲେ ଗାତରେ ପଡ଼େ ।
    ଦେଖ, ସଖୀ ବନମାଳିକ,
ଛାଡ଼ ନପୂନ ଦଶ ଚରଣ.

ବେଜ ଭୁଜ, ମୁଖ ଘୁରକ ? (ଶ୍ରୀକୃଷ୍ଣ ଗାଈ ଦୁହିଁବା)
ଦୁଆରେ ଚୂଲି, ଯାଉଛୁ ଭୁଲି ।

ଧ

ଧୀର ପାଣି ପଥର କାଟେ ।
ଧୀର ଧୀର ଘୁଲିକି,
ସବୁ ନୁହେଁ ଘୋଡ଼ା ପାଲିକି ।
ଧୂଆ ମୂଳା ଅଧୂଆ ମୂଳା ସମାନ ।
ଧାନ ଗୋଟି ଗୋଟି
ଖଇ ଗୋଟି ଗୋଟି
ବାଛୁ ବାଛୁ ଘଣ୍ଟ ପାହିଲା,
ବାପାଙ୍କୁ କହିବ ହଣ୍ଡା ନ ଢ଼କିବେ,
ବଇଷମ ହେବା ନୋହିଲା ।
ଧୋବା ଘରେ ନାହିଁ ବାର ବରଚ,
ନଚ କାଚିଲେ ନଚ ଘଚ ।

ନ

ନ ଦେଖିଲି ଅଜ ଛପଣ୍ଡା ।
ନ ଦେଖିଲି ପୁଅ ଦେଖରେ,
କଚମ କାଢ଼ିଛୁ ବେକରେ ।
ନାଚ ନ ଜାଣି ଅଗଣାର ଦୋଷ ।
ନଈ ନ ଦେଖୁଁ ଲଙ୍ଗଳା ।
ନ ଛିନ୍ତଲେ କେହି ଘର ଛପର କରନ୍ତି ନାହିଁ ।
ନକଲରେ ଅକଲ କଅଣ ?

ନଈକେ ବାଙ୍କ, ଦେଶକେ ଫାଙ୍କ ।

ନାହିଁ ମାମୁଁଠାରୁ କଣା ମାମୁଁ ଭଲ ।

ନାହିଁକୁ ଉପାୟ ନାହିଁ,

ମଲାକୁ ଔଷଧ ନାହିଁ ।

ନାମ ବଡ଼ା ଦର୍ଶନ ଥୋଡ଼ା ।

ନିଜେ ଗୁରୁ ନିଜେ ଚେଲା ।

ନନ୍ଦ ଶୁଖିଲେ ନାଆ,

ଅନ ଶୁଖିଲେ କ କରିବ ମାଆ ?

ନିଆଁ ନ ଥିଲେ ଧୂଆଁ ନ ବାହାରେ ।

ନକ୍ର ବଳ ସ୍ଥଳ, ବନ୍ଧୁ ବଳ ବଳ ।

ନାଟର ଗୁରୁ ଗୋବର୍ଦ୍ଧନ ।

ନିଜ ଗାଁ ମଶାଣୀ, ପର ଗାଁ ପାଣି ।

ନାଁଟି ମୋର ଘର, ନ କର ମୋତେ ପର ।

ନିତି ମାଗନ୍ତାକୁ ଦିଅନ୍ତା ନାହିଁ,

ନିତି ମରନ୍ତୁକୁ କାନ୍ଦନ୍ତା ନାହିଁ ।

ନିଦ ନ ମାଡ଼େ ରୋଗୀକୁ,

ନିଦ ନ ମାଡ଼େ ଯୋଗୀକୁ ।

ନୀଚେ ପାଇଲେ ଅଧିକାର,

ଋଷିଙ୍କୁ ବୁଡ଼ାଇଲେ ଘର ।

## ପ

ପୋଷା ପୁଅ ଗୁଞ୍ଜା ରୁଅ ।

ପୋଖରୀରେ ପାଣି ଥିଲେ ଆଡ଼କୁ ଶୀତଳ ।

ପଚର ଗୋଟାଇ ଆସି, ଖୋଟା ମୂଲ କରିବା ।

ପାଣି ପିଇବ ଛାଣି,
ପଇସା ନେବ ଗଣି ।
ପିଠି ଜାଣିବ କାହୁଁ ପେଟ ବ୍ୟଥା ।
ପେଟ ପୋଷ, ନାହିଁ ଦୋଷ ।
ପଇଡ଼ ପାଣିରେ ପୁଞ୍ଜାଏ ମାଛ,
ଆଖିରେ ଦେଖିଲେ ହୁଅଇ ମିଛ ।
ପାଇକ ହୋଇ ଚରଣ ଫାଟୁଆ,
ବଳଦ ହୋଇ ଗୁଲ୍ଲଇ ମଠୁଆ ।
ଗାୟକ ହୋଇ କଣ୍ଠ ମୋଟିଆ,
କଟେ ଦନାଇ, ଏ ଛଟପଟିଆ ।
ପରତେ ନ ଯିବୁ ଦାସ ସୁନାସ,
ପରତେ ନ ଯିବୁ ବଟପ ନାସ ।
ପରତେ ନ ଯିବୁ ଚୁଟୀକଠାକୁ,
ପରତେ ନ ଯିବୁ ଚଣ୍ଡୀକଠାକୁ,
ପରତେ ନ ଯିବୁ ଚନ୍ଦ୍ରୀରେ ପୁତା,
ଝାଏ ବାଣ ପୁଣି ସ୍ତ୍ରୀରାଏ ସୁତା ।
ପଳାଇ ପଶିଲ ମାଉସୀ ଘରେ,
ମାଉସୀ ମାଇଲେ ଢ ପ୍ରହରେ ।
ପର ପୁଅକୁ ପୁଅ କରି ଆଣି,
ତାକୁ ନ ବୋଲିବ ବାଳକ ।
ଅଡ଼ୁଆ ସୂତାରୁ ଖିଅକ ପାଇଲେ,
ତାକୁ ନ ବୋଲିବ ସଳଖ ।
ତୋଷଣୀ କଂସାରେ ଗୁଣ୍ଡାଏ ପଡ଼ିଲେ
ତାକୁ ନ ବୋଲିବ ବେଳକ ।

ଝୋଟି ଝୋପି ହୋଇ ମେଘ ବରଷିଲେ,
ତାକୁ ନ ବୋଲିବ ପାଳକ ।
ପାଖରେ ଶୁଏ, କାନରେ କହେ,
ତା କଥା କ ଅନ୍ୟଥା ହୁଏ ।
ପର ଘରେ ଖାଇ ମାଗଣା ରୁଷା,
ଭିକ ମାଗି ଯାଇ ଖେଳିବା ପଶା,
ବାସି ଧୋବ ଲୁଗା ପିନ୍ଧଇ ଚଷା,
ସାନ୍ତ ବାପୁଡ଼ାଙ୍କୁ ଭୁକାର ଭଷା,
ଏସବୁ ପଛକୁ ଫସର ଫସା ।
ପର ପୁଅ ମଲା, ନାଁ, ବେଗ ବାହାରେ ବାହାରେ ଗଲା ।
ପାଣି ପିଟିଲେ ଦୁଇଭାଗ ହୁଏ ନାହିଁ ।
ପାଗ ବାନ୍ଧୁ ବାନ୍ଧୁ କଚେରୀ ବରଖାସ୍ତ ।
ପାପ ଧନ ପ୍ରାୟଶ୍ଚିତ୍ତରେ ଯାଏ ।
ପାଣି ଯେଉଁ ଆଡ଼େ,
ଛତା ସେଇ ଆଡ଼େ ।
ପିଜସା ହେଉ, ମଜସା ହେଉ,
ବାପଠାରୁ ବଡ଼ ଜୁହନ୍ତ କେଉ ।
ପେଟ ପାଇଁ ନାଟ, ସଉଦା ପାଇଁ ହାଟ ।
ପେଟରେ ଭୋକ, ମୁହଁରେ ଲାଜ ।
ପେଟ ପୂରିଲେ ଛିଙ୍ଗି ଗୋବର ।
ପୋଡ଼ା ଘାରେ ଚୂନ, ପଚୁଘାରେ ଲୁଣ ।
ପିଠିରେ ମାର ।
ପେଟରେ ମାର ନାହିଁ ।
ପୋଥି ବାଇଗଣ, ନାଁ, ବାଡ଼ି ବାଇଗଣ ?

ପର ପିଠା, ବଡ଼ ମିଠା ।
ପୋଡ଼ା, ପୋଚା, ପକା, ଏ ତିନିଟା ଏକା ।
ପଇସା ଥିଲେ ବାଘର ଦୁଧ ମିଳେ ।
ପକାଇଲୁ ଛେପ କି ଚୋକନ୍ତି ?
ପଞ୍ଚ ମୁଖେ ହର ।
ପୁଅ ଯେବେ ଯୋଗ୍ୟ, ଧନ ସଞ୍ଚ କାହିଁକି ?
ପୁଅ ଯେବେ ଅଯୋଗ୍ୟ, ଧନ ସଞ୍ଚ କାହିଁକି ?

ଫ

ଫଳନ୍ତ ଗଛ ଫୋପଡ଼ା [ଖାବଡ଼] ସହେ ।
ଫାଟେ ଭୁଟେ, ଧୋବାର ଯାଉଛି କେତେ ?
ଫଟା ମୃଦଙ୍ଗକୁ ଜଡ଼ା ଗାୟକ,
ଚକ୍ଷି କାଣୀ ତାଙ୍କ ନାଚୁଛି,
ଅବୁଝା ରଜାକୁ କେମେଇ ପାତର,
ଯାହା ଇଚ୍ଛା ତାହା ବୁଝୁଛି ।
ଫଳାହାର ଦେଖି ଏକାଦଶୀ ।
ଫାଟୁଆ ବାଟୁଆ ଜନମ ଶ୍ରେଷ୍ଠା,
ଗୁଳିଲେ ବାଟ, ଦେଖ ହଟହଟା ।
ଫଳ ହେଜ କାର୍ଯ୍ୟ କରଇ ଭୋଗୀ,
ଫଳ ତେଜ କାର୍ଯ୍ୟ କରଇ ଯୋଗୀ ।
ଫଳ ଯେନ ବୃକ୍ଷ ନମଇ ପୁଣ,
ଗୁଣୀ ହେବ ଯେବେ ଶିଖ ତା ଗୁଣ ।

ବ

ବଇଦ, ପଇଡ଼, ମଦଘଡ଼ା,
କାମ ସରିଲେ ଗଡ଼ଗଡ଼ା ।
ବୁଦ୍ଧି ନ ଆସଇ ଘରକୁ,
କନ୍ଧ ଦେଉଥାଇ ପରକୁ ।
ବଗମୁହଁ ଚୁହିଁ ବଗୁଲି ହସେ,
ତୋ ମୁହଁ ମୋ ମୁହଁ କେମିତି ଦିଶେ ?
ବଡ଼ ଲୋକଙ୍କୁ ଉତ୍ତର ନାହିଁ,
ସ୍ୱର୍ଗକୁ ନିଶୁଣୀ ନାହିଁ ।
ବହୁତ ଲୋକରେ ମୂଷା ମରେ ନାହିଁ ।
ବାହାଘର ଦିନ ବାଇଗଣ ରୋଇବା ।
ବଥ ଫାଟିଲା, ବଥା ହଟିଲା ।
ବାପ ଖାଇଛି ଚାଳ, ପୁଅକୁ ହୋଇଛି କାଳ ।
ବାଟରେ ଦେଖିଲି କମାର,
ଫାଳ ପଜାଇ ଦେ ଆମର ।
ବଣରେ ପୁଅ ବେଇ ଡାହାଣୀକୁ ଡର କାହିଁକି ?
ବୟସ ବଢ଼ୁଛି ଯେତେ,
ଆୟୁଷ ଛୁଟୁଛି ତେତେ ।
ବନ ପୋଡ଼ିଗଲେ ସମସ୍ତେ ଜାଣନ୍ତି,
ମନ ପୋଡ଼ିଗଲେ କିଏ ଜାଣେ ?
ବୋଝ ଉପରେ ନଳିତା ବିଡ଼ା ।
ବହୁତ ଲୋକରେ ମୂଷା ମରେ ନାହିଁ ।
ବାତକୁ ବଟା, ବ୍ୟାଧିକୁ ବୈଦ୍ୟ ।

ବାଡ଼ିଲ ଭତକୁ ଆଶା ନାହିଁ ।
ବାପ ଜାଣି ପୁଅ, ମା ଜାଣି ଝିଅ ।
ବାର ବର୍ଷର ତପସ୍ୟା ଶୁଖୁଆ ପୋଡ଼ାରେ ଗଲା ।
ବେଙ୍ଗ ବଢ଼ାବଢ଼ି ପାଣି ଦେ,
ଗଡ଼ିଆ ପୋଖରୀ ଭସାଇ ଦେ ।
ବେଲୁବ୍ ନମ୍ବର ଏକ,
ରାଜାଙ୍କ ସଙ୍ଗରେ କରୁଛି ଟେକ ।
ବାଘର ଘରେ ମିରଗର ନାଟ ।
ବଢ଼ ବଡ଼ ଗଲେ ଫସର ଫାଟି,
ସାନ ସାନ ଅଇଲେ ବେସର ବାଟି ।
ବ୍ରାହ୍ମଣ ରଜା ଖଣ୍ଡ ପରଜା,
ଡହ ଡହ କାଞ୍ଜି ଶୀତଳ ଭଜା,
କହେ ଦନାଇ, ଏଥେ ନାହିଁ ମଜା ।
ବଚନ ମଧୁର ତିଳକ ସରୁ,
ଏମାନେ ଜାଣିବ ଠକଙ୍କ ଗୁରୁ ।
ବାଉଁଶ ଫୁଲିଲେ ମରେ,
ମଣିଷ ବୁଲିଲେ ମରେ ।
ବ୍ରାହ୍ମଣ, ବଇଦ, ବରଷା, ବଢ଼ି,
ଦକ୍ଷିଣା ପାଇଲେ ଯାଆନ୍ତି ଗୁଡ଼ି ।
ବାର ବରଷର ମଇଳା ପୋଷେ,
ଖୁଡ଼ୁତା ଦେଖିଲେ କୋଳରେ ବସେ ।
ବଂଶ ବୁଡ଼ିବା ଏମନ୍ତ ଗତି,
ଗୋସେଇଁ ଥାଉ ଥାଉ ମରଇ ନାତି ।
ବଛୁ ମନ୍ତ୍ର ନ ଜାଣି ସାପ ଗାତରେ ହାତ ।

ବେଶୀ ନ ଖାଇବ ବାଟେ,
ଗାଧୋଇ ବସିବ ତୁଠେ,
କଳି ନ କରିବ ହାଟେ,
ଶୟନ କରିବ ଖଟେ ।
ବଂଶ ବୁଡ଼ିଲା ବେଳକୁ ଘୋଡ଼ାମୁହାଁ ପୁଅ ଜନ୍ମେ ।
ବୁଢ଼ା ଶ୍ୱଶୁର, କଣା ଦେଢ଼ଶୁର,
ଟୋକା ମଲାଶୁର, ଟାଁ ଜୁଆଇଁ;
ଏ ଚାରିଙ୍କର ସମ୍ମାନ ନାହିଁ ।
ବସି ଖାଇଲେ ନଈବାଲି ଅଣ୍ଟେ ନାହିଁ ।
ବେଙ୍ଗ ଉପରେ କୋରଡ଼ା ।
ବଡ଼ ଘର ବୋଲି ନାଁ ପଡ଼ିଛି,
ଅଡ଼େଇ କୁଲା ଶାଗ ସିଝୁଛି ।

ବାଆ ମୁଠା କଲି, ବାଆ ମୁଠା କଲି,
ବାଆ କି ମୁଠାରେ ରହିବ ?
ସାତ ଥର କରି ବୁଝାଇ କହିଲେ,
ପର କି ଆପଣା ହୋଇବ ?

ବାଡ଼ ହୋଇ ଯେବେ ଖାଏ ବେଙ୍ଗସା,
ବଗଡ଼ ହୋଇ ଯଦି ନ ମାରେ ମୂଷା,
ରଜା ହୋଇ ଯଦି ଚଣ୍ଡଇ ଚଷା,
କହ କି ହୁଏ ସେ ଦେଶର ଦଶା ?
ବାଳିର ବନ୍ଧ, ଖଳର ପ୍ରୀତି ।
ବାମନ ହୋଇ ଚନ୍ଦ୍ରକୁ ଧରିବା ।
ବାଛୁଲେ କମଳଯାକ ବାଳ ।

ବ୍ରାହ୍ମଣ ରଜା, ଖଣ୍ଡ ପରଜା,
ଛତଲ୍, ଆମ୍ବେଲ, ଶୀତଳ ଭଜା ।
ବେଲ ପାଚିଲେ କାଉର କି ଯାଏ ?
ବାନ୍ଧ ମଣ୍ଡୁଣୀ ଗୁଲ ରେ,
ଦୁଇ ପଗ୍ଣିଆ ଭଲରେ ।
ବନ ଦୁରୁଗାଙ୍କୁ ବନ ମାଳତୀ,
ଦୀପ ନାହିଁ କି ଧୂପ ନାହିଁ, ଭୁଞ୍ଜା ଆଳତି ।
ବୁଢ଼ା ବଡ଼ କୃପଣ,
ପଖାଳ ଭାତରେ ନ ଖାଏ ଲୁଣ ।

ଭ

ଭଲ ଭଲ ଲୋକ ବେଶ କରନ୍ତି,
ରୁକ୍ମୁଣୀ ଦେଖିଲେ ମ'ଣ ଗୋଡ଼ାନ୍ତି ।
ଭଙ୍ଗା ଚୂଡ଼ୀ ଯୋଡ଼ ହୁଏ ନାହିଁ ।
ଭାତ ମୁଠେ ଖାଏ,
ଭାଟ ପର ଗାଏ ।
ଭଲ ତ ଭଲ ମୋ କଲବା କଷି,
କଲବା ଥିଲେ ତିଅଣ ଅଛି ।
ଭାତ ଛଡ଼ୁଲେ ସହସ୍ରେ କୁଆ ।
ଭାଙ୍ଗିବା ସହଜ, ଗଢ଼ିବା କଠିନ ।
ଭାବକୁ ନିକଟ, ଅଭାବକୁ ଦୂର ।
ଭାତ ଗୋଟିଏ ଚିପିଲେ ଜଣାଯାଏ ।
ଭ୍ରମର ବଳ କୁନ୍ତୀଙ୍କୁ ଜଣା ।
ଭାରଯା ଲାଗି ଶଳାକୁ ଜୁହାର ।
ଭଲେ ହେଲ ଭାଇ ପଡ଼ଶାପଣକୁ ଯୋଗ୍ୟ ନୁହେଁ ।

ଭେକ ହୋଇଥିଲା ବରଷେ,
ଧୋଷି ହେଉଥାଉ ପ୍ରତୁଷେ ।
ଭାଙ୍ଗିଲା ଯୁଆଳ ଛିଡ଼ିଲା ଯୋତ,
ଝିଅ ମଲେ ଜ୍ୱାଇଁ କାହିଁରେ ଗୋତ ।

## ମ

ମାରି ନେଲା ମହାପାତ୍ରେ,
ବୃହିଁଚନ୍ଦ୍ର ଜଳକା ।
ମା'ର ଗାଳି ପାଣିର ଗାର,
ବାପର ଗାଳି ବଜ୍ରର ଧାର ।
ମାଗି ଆଣିଲା ତଉଣ ଶଢ଼କେ ।
ମନ ମତୁଆ,
ପାନ ନାହିଁ, ଗୁଆ ନାହିଁ, ଭୁଛା ବତୁଆ ।
ମରିବା ପୂଅ ମଧୁସୂଦନ ।
ମନକୁ ଜଣିଲେ ମୁନ ।
ମହରଗରୁ ଆସି କାନ୍ତାରରେ ପଡ଼ିଲା,
ରହ୍ମାର ସୁଢ଼ ଡିପ ଚଢ଼ିଲା ।
ମନ ଦେଇଛୁ ଏଣି ଚେଣିକ,
ହାତ ପାତିଛୁ ଗୁଡ଼ଆଣୀକ ।
ମା ଝିଅ ଦେଉଳେ ପଶେ,
ଯେଝା ସୁଖ ଯେଝା ମନାସେ ।
ମା'ର ଖୁଦ କୁଣ୍ଡା, ବାପର ସୁନା ମୁଣ୍ଡା ।
ମନର ନାହିଁ କ ମାଳର ନାହିଁ,
ଭଜ ଭଜ କରି ପାଇବୁ କାହିଁ ?

ମା'ର ଅଧା ମାଉସୀ,
ବାପର ଅଧା ପିଉସୀ ।
ମାନଲେ ଦେଅଁ, ନ ମାନଲେ ପଥର ।
ମାଳକୁ ଛେଳ ଅଡ଼୍ୟା ।
ମାର, ମାର, ଭଣ୍ଡାରକୁ ମାର ।
ମାଛ ତେଲରେ ମାଛ ଭଜା ।
ମଇଁଷି ଶିଙ୍ଗ ଫଟା, ଯୁଝିଲ୍ୟ ବେଳକୁ ଗୋଟା ।
ମୂର୍ଖ ପୁଅ, ବିଧବା ଝିଅ,
ବିନା ନିଆଁରେ ଦହନ୍ତି ଦେହ ।
ମାରେ ହରି ରଖେ କେ ?
ରଖେ ହରି ମାରେ କେ ?
ମାଙ୍କଡ଼ ହାତେ ଶାଳଗ୍ରାମ,
ନଛୁଇ ନଛୁଇ ନେଲ୍ୟ ପ୍ରାଣ ।
ମୋତେ ଯେତେ ମାଠିବୁ ମାଠ,
ମୁଁ ସେହି ଦରଘୋଡ଼ା କାଠ ।
ମାରେ ମାଛ, ଖାଏ କଙ୍କଡ଼ା ।
ମନ୍ତ୍ର ଲେଉଡ଼ୁଥିଲ୍ୟ ଯାହା,
ବଇଦ ବତାଇଲ୍ୟ ତାହା ।
ମଲ୍ୟ ପୁଅ ସୁନ୍ଦର,
ପଳାଇଲ୍ୟ ମାଛ ବଡ଼ ।
ମୂଳରୁ ମାଇପ ଜାଣ୍ଡି,
ପୁଅ ନାଁ ଗୋପାଳଆ ।
ମୁଣ୍ଡ ଅରଜିଲେ ତୁଣ୍ଡ ଖାଏ ।

ମୂଢ଼ ଘରେ କ ଦୃଢ଼ ଘରେ;
ମଟ୍ଟି ମଟ୍ଟିକଆ ବୁଢ଼ ମରେ ।
ମଣିଷ ପ୍ରକୃତି ମଲେ ଛୁଟେ,
ଧୂର୍ତ୍ତର ପ୍ରକୃତି ପଙ୍କେ ଲେଟେ ।
ମାଗିବା ଠାରୁ ହୀନ ନାହିଁ,
ଦେବାଠାରୁ ପୁଣ୍ୟ ନାହିଁ ।
ମୁଣ୍ଡିଟା ରାହୁ, ଗଣ୍ଡିଟା କେତୁ ।
ମଣିଷ ମାୟାରେ ଦେବତା ପଶି ନ ପାରେ ।
ମଠ ବୃକଶଆ ହୋଇବ,
ଖେଳ ଆଢୁଣଆ ନୋହିବ,
ଖଟଟି ଉପରେ ମାଠଟି ପକାଇ,
ଘୋଡ଼ଘାଡ଼ ହୋଇ ଶୋଇବ ।
ମାଢ଼ଖିଆ ମହାଦେବ,
ମାଢ଼ ଖାଇଲେ ଗାଳି ଦେବ ।
ମାନିଲେ ଶାଳଗ୍ରାମ, ନ ମାନିଲେ ପଥର ।
ମୁଢ଼ି ଖାଇ ଘନ ପିଅ ପାଣି
ବଇଦ ପଇସା ନେବଟି ଗଣି ।
ମୁରକ ହସା    ମାଗୁର ଦଶା
ହୁଆରେ ନ ଥାଇ ବାଳ,
ଏକ ଆଖିଆକୁ    ପରତେ ନ ଯିବ,
ଖାଇଥିବ ଯେତେ କାଳ ।
ମେଦୂଆ ଖଗ    ଭୃତ୍ୟ ମଗଗ
କମ୍ପଣ୍ଡୀ ନାଗ    ଗୋଦଣ୍ଡ ଦାସ
ଏ ଚରିଙ୍କ ମହିମା ସହି ନ ପାରି ।

ମହାନନ୍ଦୀ ସଙ୍ଗେ ଜୋର,
ଲୁହାକୁ ନେଇଣ ମୂଲ କରୁଥିଲ,
ସୁବର୍ଣ୍ଣ ସଙ୍ଗେ କ ଭୁଲ ?
ମାଡ଼ୁଆ ଠାକୁରକୁ, କଦୁଣିଆ ପୂଜାଶ୍ର ।

ଯ

ଯମ ନ ଜାଣେ ପାଚଲା କଞ୍ଚା ।
ଯୁଦ୍ଧ ଯଦ କର ବସିବ ସଙ୍ଗେ ଥିବ ଭାଇ,
ଦୁଧ ଯଦ ଖାଇ ବସିବ ଘରେ ଥିବ ଗାଈ ।
ଯାହାର ଖାଇ ଲୁଣ,
ତାହାର ଗାଇ ଗୁଣ ।
ଯାହା ଦେଖ, କଦଳୀ ବଢ଼ା ।
ଯାହା ନ ଦେଖିବ ଦୁଇ ନୟନେ,
ପରତେ ନ ଯିବ ଗୁରୁ ବଚନେ ।
ଯାହାକୁ ସାପ କାମୁଡ଼େ,
ତା ମା ପାଳ ଦଉଡ଼ି ଦେଖିଲେ ଡରେ ।
ଯାହା ଦେଇଥିବ ବାଟକୁ,
ଯାହା ଥୋଇଥିବ ଝଣ୍ଟକୁ,
ଯାହା ଖାଇଥିବ ପେଟକୁ ।
ଯେତେ ବାଉଁଶ ତେତେ ପୋଲ ।
ଯେ ଯାହାକୁ ଦେଖି ନ ପାରେ,
ଉଆଁସ ରାତରେ ଜକୁଣୀ ମାରେ ।
ଯେ ପକ୍ଷୀ ଉଡ଼େ ଯେତେ ଦୂର,
ସେ ଜାଣେ ତହିଁର ବଣ୍ଟର ।

ଯାହା ଦେଇଥିବ ପରଲୋକକୁ,
ଯାହା ରଖିଥିବ ପର ଲୋକକୁ ।
ଯାଉ ଧନ, ରହୁ ପଣ ।
ଯେବେ ପାଇଥାଏ ଘଇତା ବପୁ,
ସଜ ହୋଇଥାଏ ବାପ ଘରକୁ ।
ଯାହାର ଯେଉଁ ଠାଣୀ,
ସ୍ଲଲବାଠାରୁ ଜାଣି ।
ଯେତେ ମାଠିବୁ ମାଠ,
ସେହି ଦରପୋଡ଼ା କାଠ ।
ଯାଉଥିବ ଆସୁଥିବ ନ କରିବ ପର,
ଦାଣ୍ଡରେ ଶୋଇ, ହାତରୁ ଖାଇ କରିଦେବ ଘର
ଯାଚ କଲ୍ୟାଣ, ମାଗି ଓଳଗି,
ଏ ନୁହନ୍ତ କେଉଁ ଭଲକ ।
ଯେତକ ଚୂନାକୁ ସେତକ ପିଠା ।
ଯାହା ନ ଖାଏ ଝିଅ,
ତାହା ଜ୍ୱାଇଁଙ୍କ ପତରେ ଦିଅ ।
ଯୋଡ଼ାକୁ ଘୋଡ଼ା ସରି ନୁହେଁ ।
ଯେତେ ପୁଅ ତେତେ ଘର,
ଯେତେ ଝିଅ ସେତେ ବର ।
ଯୋଗୀ ଘରେ କ ଢେଙ୍କି ?
ଯହିଁ ଗୁଣ, ତହିଁ ଖୁଣ ।
ଯତ୍ନ କଲେ ରତ୍ନ ମିଳେ ।
ଯେଣିକ ଇଚ୍ଛା ତେଣିକ ଯାଅ,
ଆୟୁଷ ଯେନ ବୁଲୁଥାଅ ।

ଯେବେ ପୁଅ ଯୋଗ୍ୟ, ତେବେ ସଞ୍ଚୁଛୁ କାହିଁକ ?
ଯେବେ ପୁଅ ଅଯୋଗ୍ୟ, ସଞ୍ଚୁଛୁ କାହିଁକ ?
ଯେଷାକୁ ତେଷା,
ହାରାମଜାଦାକୁ ଟାଙ୍ଗିଆ ପଶା ।
ଯେତେ ପୂଜାଦ୍ରୂଜ ଦାମୋଦରଙ୍କୁ,
ଯେତେ ନଦନଦୀ ସମୁଦରକୁ ।
ଯାହାକୁ ଯିଏ, ଝରକ ଭୃଜଳ ଭିନ୍ନାଇଦିଏ ।
ଯହିଁ ଦାନା, ତହିଁ ଯାନା ।

ର

ରଙ୍କରେ, ଖୃଦ ଫୁଟିଲେ ଯାଉ ।
ରନ୍ଧ ନ ଜାଣି ହାଣ୍ଡିର ଦୋଷ ।
ରୁଅ। ଟାଣ ଧାନ,
ଗୁଆ ଟାଣ ପାନ ।
ରଣ୍ଡକୁ ଲଗା ନାହିଁ,
ଷଣ୍ଢକୁ ପଘା ନାହିଁ ।
ରଣ୍ଡ ମାଇପର ନ ହେବ ଜୋଇଁ,
ଅଲପ କଥାରେ ମହତ ଯାଇ ।
ରସିକ ପଣକୁ କେଦାର, ଫୁଲ ଶୁଙ୍ଘୁଥାଏ ମନ୍ଦାର ।

ଲ

ଲକ୍ଷେ ଅର୍ଜିଲେ ପକ୍ଷେ ନ ଯାଏ ।
ଲୁଣ ଖାଏ ହାଣ୍ଡି,
ଚନ୍ଦ୍ରା ଖାଏ ଗଣ୍ଡି ।

ଲୁଣ ଖାଉଛୁ, ଗୁଣ ଗାଉଛୁ ।
ଲେଡ଼ଗୁଡ଼ ହାତରୁ କଦ୍ଦୁଣୀକୁ ବହିଗଲେ ଅଉୁଆ ।
ଲେଖୁ ଲେଖୁ କରଣ,
ହଗୁ ହଗୁ ମରଣ ।
ଲଜୁଆ ବ୍ରାହ୍ମଣ, କାଣୁଆ ବୈର,
ଗାଁ ମଝିରେ ଯେବେ ଥାଇ ଜୋର,
କମାରର ଯେବେ ମୁହଁରେ ଥୋଡ଼,
ଏ ଛଅଙ୍କ ମୁହଁ ପୋଡ଼ ।
ଲଭ ଖାଇବାକୁ ମାଧ ମହାନ୍ତ,
ବୋଝ ବୋହିବାକୁ ଗୋଦଡ଼ା ଚନ୍ତି ।
ଲୁହା କଷ୍ଟେଇକୁ, କମାର କଷ୍ଟେଇ ।

## ଶ

ଶାଳଗ୍ରାମର ଶୋଇବା ବସିବା ସମାନ ।
ଶିଳ ଶିଳପଟା ଗଗନେ ଉଡ଼ିଲେ,
ଚୃଳା ବୋଲେ ମୁହିଁ ଗୁରୁ ।
ଶୁଣ୍ଡିର ସାକ୍ଷୀ ମାତାଲ ।
ଶୋଇଲା ପୁଅର ଭାଗ ନାହିଁ ।
ଶୁଣ୍ଡୀ ସଇନ୍ଧବ ହରଡ଼ା ଜୁଆଣୀ,
ଖାଇ ପିଇଥିଲେ ଉଷୁମ ପାଣି,
ତେବେ ନ ଯିବଟି ବଇଦ ଆଣି ।
ଶଏ ଭଷା ଏକ ଲେଖା ।
ଶାଢ଼ୀ ନାଁ ଚନ୍ଦ୍ରମୁଖୀ, ଯେ ଅର୍ଜିଲା ସେ ସୁଖୀ ।
ଶିଆଳ ଜନା, ଘର ପୋଡ଼ିଗଲା ପଛକୁ ଅନା ।

## ଷ

ଷାଠଏ ମହଣ ଘିଅ ହେବ ନାହିଁ,
ରାଧା ନାଚବ ନାହିଁ ।

## ସ

ସମୁଦ୍ରକୁ ଶଙ୍ଖେ ପଣା ।
ସାଉଣ୍ଡିଲ କାଣ୍ଡ ପୁଚ୍ଛକୁ ନଅଣ୍ଟ ।
ସାହସ କଲେ ମଣି,
ସାହସ କଲେ ଚରି,
ସାହସ କଲେ ଘର ଦୁଆର କରି ।
ସୁ ଗୋରୁକୁ ଡାଙ୍ଗେ, ସୁ ମଣିଷକୁ ପଦେ ।
ସିଧା ଆଙ୍ଗୁଳରେ ଘିଅ ବାହାରେ ନାହିଁ ।
ସବୁ ଚୁଲି ମୁହଁ ପଶ୍ଚିମକୁ ?
ସବୁ ଯାଉ ମହତ ଥାଉ ।
ସରଗକୁ ନଶୁଣି ନାହିଁ,
ବଡ଼ଲୋକଙ୍କୁ ଉତ୍ତର ନାହିଁ ।
ସାପ ମରୁ ନାହିଁ, ବାଡ଼ି ଭାଙ୍ଗୁ ନାହିଁ ।
ସୁଜନ ପୀରତି ହେମ (ସୁନା) ବରାବର,
ଦେହରେ ଜ୍ୟୋତି ବଢ଼ାଇ,
କୁଜନ ପୀରତି କାଚ ବରାବର
ଛୁଟେ ତ ଯୋଡ଼ ନ ଯାଇ ।
ସାପ ହୋଇ କାମୁଡ଼େ,
ଗୁଣିଆ ହୋଇ ଝାଡ଼େ ।

ସାନ ଶାଳୀ ସଙ୍ଗେ ଝାପରା,
କନ୍ଧଲେ ଯାଦ ସନ୍ଦେ,
କାଳ ସଉଦା ଭଲ,
ମାଗିଲେ ଯାଦ ବଏ,
ସକାଳ ଗାଧୁଆ ପଖାଳ ଖିଆ ଭଲ
ଡେହରେ ଯାଦ ଯାଏ ।
ସୁନାଶୀ ମାଡ଼ ଠୁକୁଠୁକୁ, କମାର ମାଡ଼ ପାହାରେ ।
ସଞ୍ଜ ଲୋ, ସଜେଇ ହେଉଛୁ କେତେ,
ତୋ ଘର ନାଆଁ ଅଣ୍ଟିରେ ପୂରାଇ,
ଖଟାଇ ହେଉଛୁ ମୋତେ ।
ସେ ରାମ ନାହିଁ କି ସେ ଅଯୋଧ୍ୟା ନାହିଁ ।
ସମ୍ପତ୍ତି ବେଳେ ନୋହିବ ଝୁଡର,
ବିପତ୍ତି ବେଳେ ନୋହିବ କାତର ।
ସହିବା ଗୁଣ ବଡ଼ଲୋକ,
ଅଳ୍ପକ ଲୋକ ଭକଭକ ।

( କୃପଣତାର ଦୃଷ୍ଟାନ୍ତ )

ସଟୀ ନାମ ଘର ବାହା,
ଗଇଣ ଗଛଟେ ପଡ଼ିଛି,
ଚହିଁ ଧୋବା ଛ'ଜଣ ଠିଆ,
କସିଣ୍ଡି ମାଛଟେ ଶୋଇଛି,
ଚହିଁ ଛଅଣ୍ଟା ପନଖି ପଡ଼ୁଛି,
କେହି ଅଣ୍ଡେଇ ପଣ୍ଡେଇ ନେଉଛି,
କେହି ସଇ ସମ୍ବନ୍ଧୀ ବୋଲି ଦେଉଛି,
ତାକୁ ସଟୀ ନାମ ବୋଲି ସହୁଛି ।

## ହ

ହାଟ ନାଶ କରେ ଝିପିର ପାଣି,
କୁଳ ନାଶ କରେ ଜନ ଠାଇଁଆଣୀ,
ପୁରୁଷ ନାଶ ହୁଏ ଉପାସେ ଶୋଇ ,
ସ୍ତ୍ରୀ ନାଶ ହୁଏ ହାଟକୁ ଯାଇ ।
ହରିବୋଲ ଖାଇ ଗୋବିନ୍ଦ ବୋଲ,
ଭସିଲା ପଥର ବୁଡ଼ିଲା ଶୋଳ ।
ହାତେ ମାପି ରୁଖଣ୍ଡେ ରୁଲ ।
ହାଥୀ ଚଲେ ବଜାର,
କୁକୁର ଭୁକେ ହଜାର ।
ହାଥୀ ଚାଲୁଥାଇ କୁକୁର ଭୁକଇ ।
ହାଥୀ ଚାଲୁଥାଇ ନହଲ ହୋଇ,
କୁକୁର ଭୁକଇ କାହାର ହୋଇ ।
ହାତୀ ଗଳେ, ପିମ୍ପୁଡ଼ି ନ ଗଳେ ।
ହାତୀ ଜୀଇଥିଲେ ଲକ୍ଷେ,
ମଲେ ବ ଲକ୍ଷେ ।
ହାତେ ନାହିଁ ଧନ,
ପୁଅ ବାହା କରିବାକୁ ମନ ।
ହାଣ୍ଡି ଖାଇ ହାଣ୍ଡିରେ ମନ,
ରାତିରେ ଦେଖଇ ହାଣ୍ଡି ସପନ ।
ହାନି ଲଭ ଖାଏ ମାଧ ମହାନ୍ତି,
ବୋଝ ବହିବାକୁ ଗୋଦଡ଼ା ଛନ୍ତି ।
ହରେ ନାହିଁ କି ବାଟ ଛୁଡ଼େ ନାହିଁ ।

ହାକମଠାରୁ ହୁକୁମ ବଡ଼ ।
ହକ କଥା, ନମ୍ବ ତଅଣ,
ଆଗ ପିଚା, ପଛକୁ ଗୁଣ ।
ହାତରୁ ଖାଇ ଘୋଡ଼ା ଆଗେ ଡେଇଁବା ।
ହାତ ନଡ଼ବଡ଼ କହୁଣୀ ଖାଏ,
ଜଭ ନଡ଼ବଡ଼ ହଗି ଧାଏଁ ।
ହଡ଼ା ମଲେ ଗୋହାଳ ଭୁଛା ।
ହଡ଼ା ବେଦନା କୁଆ କ ଜାଣେ,
ଠକ ଠକ୍ କର ଠେଙ୍ଗୁଣି ହାଣେ ।
ହଗେ କାକ, ମରେ ବକ ।
ହାତରେ ଗୁଡ଼, ତଣ୍ଡିରେ ଖୁର ।
ହାଟ ମଧ୍ୟରେ ବ୍ରହ୍ମଜ୍ଞାନ ।
ହାଡ଼ ଖାଏ କଜଡ଼, ଢୋଲ ଖାଏ କାଡ଼ ।
ହେଁସ କାଣୀ ଡେଣୁଆ ଓଲଟ ପାଲଟ ।
ହାତୀ କାଦୁଅରେ ପଡ଼ଲେ ବେଙ୍ଗ ଗୋଇଠା ମାରେ ।
ହାତେ ମାର ପଛେ, ହାତେ ନ ମାର ।
ହାଟୁଆ ହୁଡ଼ଲେ ହାଟ ପାଳଏ,
ଚଷା ହୁଡ଼ଲେ ବର୍ଷେ ।
ହଜଲ ବଳଦ ଖୋଜଲଠାରେ ।
ହାତ ଅଳସୁଆ ନଣ ବଙ୍କା ।
ହୁଲସ୍ଥୁଲ ପଡ଼ଲା,
ହାଟେ ପଡ଼ ବାଟେ ଗଡ଼ଲା ।
ହଳଫିଟୀ ହଳଆ, କଟେଷ୍ଟା ଫିଟା ଅମଲା ।
ହାଣ୍ଡିରେ ଖାଏ, ଗୋଡ଼ରେ ପଡ଼ଲେ ଗାଧୋଇ ଯାଏ ।

## କ୍ଷ

କ୍ଷେତକୁ ଗଲେ ବୁଢା (କବାର, ପାଇଟି) ଜଣେ ।
କ୍ଷଣକେ ଶଙ୍ଖ ମତ୍ସ୍ୟ,
କ୍ଷଣକେ ପାଳ ଦଉଡ଼ ।
କ୍ଷୀରରେ ଧୋଇବ, ଖଣ୍ଡରେ ମୋହ୍ଵବ,
ନମ୍ବ କ ମଧୁର ହୋଇବ ?
ଟେଢ ଥର କଶ ବୁଝାଇ କହ୍ଵଲେ,
ପର କ ଆପଣା ହୋଇବ ?
କ୍ଷୀର ଅଇଁଠା, ମାଉ ଅଇଁଠା
ଆବର ଅଇଁଠା ବେଦ,
ତୁମେ ଯାଇ ତୁମ ଗୁରୁଙ୍କୁ ପଚ୍ଚର,
ନ ଅଇଁଠା କେଉଁ ପଦ ?

## ବଡ଼ ଓ ସାନ ଅର୍ଥରେ

### (କ) ବଡର ସାନ ରୂପ

| | |
|---|---|
| କୁଲ—କୁଲେଇ | ବେଢା—ବେଢୁଲ । |
| ଖଟ—ଖଟିଆ, ଖଟୁଲି । | ଥାଳ—ଥାଳିଆ । |
| ଦାଠ – ଦଠ୍ଲୀ | ଦା—ଦାଇଲ । |
| ଚଠ – ଚଠେଇ । | କୁଣ୍ଡ—କୁଣ୍ଡି । |
| ଠେଙ୍ଗା—ଠେଙ୍ଗଣୀ । | ଖଣ୍ଟ—ଖଣ୍ଟି । |
| ନାଟକ—ନାଟିକା । | ଘଣ୍ଟା—ଘଣ୍ଟି । |
| ପୁସ୍ତକ—ପୁସ୍ତିକା । | ଛୁରା – ଛୁରୀ । |

ଡଙ୍କା—ଡଙ୍କୀ ।
ନାଳ—ନାଳୀ ।
ପୋଟଳା—ପୋଟଳୀ, ପୁଟୁଳୀ ।
ପିଣ୍ଡା—ପିଣ୍ଡି ।
ଖାଟ—ଖଟାଣୁ ।
କାନ୍ଥ—କାନ୍ଥି ।
ଢୋଲ—ଢୋଲକ ।
ଡଙ୍ଗା—ଡୁଙ୍ଗି, ଡୁଙ୍ଗା ।

( ଖ )

ବଡର ସାନ ଅର୍ଥରେ ।

ଘର—କୁଡ଼ିଆ, ପଲ୍ଲ ।
ପଥର—ଗୋଡ଼ି ।
ଶଗଡ଼—ଗୋଟିଆ ।
ନଈ—ଜୋର ।
ଖଗ—କରିଆ, ପାଞ୍ଜି ।
ରାଜହଂସ—ପାତିହଂସ, ବତକ ।
ପିକା—ଖଡ଼ ।
ବଣ—ଫୁଲବଣ ।
ପୋଖରୀ—ଗଡ଼ିଆ ।
ହାଣ୍ଡି, ଧୁମ—ଅଣ୍ଟିକା, ବଡ଼ା ।
କୋଠ—ଠେକ, ଝୋଳା ।
କୋଳପ—ତାଲା ।
ବନ୍ଧୁ—ଚନ୍ଦ୍ରା ।

ନଯୋଡ଼ ନଦ
ଗହମ ନଦ } ଛୁଇ ନଦ

ଝଙ୍କା
ବୋଝ } ପାଛୁଆ

କୁସଡ଼ୀ—ଟାଙ୍ଗିଆ

କାଣ୍ଡ—ଡାଙ୍ଗ
ଢେଙ୍କିଆ ଲଉ—ଗୋଠ ଲଉ ।
ବାଳ, କେଶ—ରୋମ, ଲୋମ ।
ଝାଞ୍ଜ—ମନ୍ଦିର, କୁବୁଜା, ଗିନି ।
ପଲମ—ଶର ।
ବାଘ—ପେଣ୍ଟା, ଦେଟା ।
ଦ୍ରୁମ—ଗୁଳ୍ମ ।
କଖାରୁ—କରଲା ।
ନୌକା—କାଠୁଆ ।
ଢୁଙ୍ଗା—ଡିଙ୍ଗ ।
ମତ୍ସ୍ୟ—ଖୁଦ ।
ତାମ୍ବଣ—କୁଣ୍ଠ ।
ପଟଳ ଡଙ୍ଗା—ଢୁଲଡଙ୍ଗା,
ପଟେଇ ।

ଚାଟର ଚଙ୍ଗୁଡ଼ି—ଗୁଜ
ଗୁଞ୍ଜି } ଚଙ୍ଗୁଡ଼ି

ଶଲଗ—ଠୁସୀ କଲର ।
ଶିଙ୍ଗା ଭେଣ୍ଡି—କୁଜ ଭେଣ୍ଡି ।

# ବଚନ

## (କ) ଜ୍ୟୋତିଷ ବଚନ

୧ । ମଙ୍ଗଳ ରାତି ବୁଧପାହାନ୍ତ,
ଯେଣେ ଇଚ୍ଛା ତେଣେ ଯାଆନ୍ତି ।

୨ । ବାଁରେ ଦେଖିଲ ବାଁ-ଟିଆଳୀ,
ଡାହାଣେ ଦେଖିଲ ଶଙ୍ଖା (ଶଙ୍ଖଚିଲ);
ଆଗରେ ଦେଖିଲ ଭଦଭଦଳିଆ,
ଜୟ କରିପିବ ଲଙ୍କା ।

୩ । କାକ ନ ରବୁଣୁ ଭୁଇଁ ନ ବସୁଣୁ,
ତାହାକୁ ବୋଲନ୍ତି ଉଷା ।
ସବୁ ଗ୍ରହଯାକ ଥାଇ ବୋଇଲେ,
ଆମେ ସେତେବେଳେ ମୃଷା ।

୪ । ରବି ଦଶଦଣ୍ଡ — ସୋମ ଚଉଠା,
ବାର ମଙ୍ଗଳ — ପଣ୍ଡିତ ଷଠା,
ଗୁରୁ ଚଉଦ — ମନ୍ତ୍ରୀ ଆଠ,
ଉଦୟ ଅସ୍ତ — ଶନିର ଘାତ ।

୫ । ମଙ୍ଗଳ ବାରର ରାତି
ହୋଇ ଆସୁଥିବ ବୁଧ ପାହାନ୍ତି
ଯାଅ ଫୁଲଇଣ ରାତି ।

୬ । ରବି, ଗୁରୁ, ମଙ୍ଗଳ ଉଷା,
ଆଉ ସବୁ ଫସର ଫସା ।

୭ । ଯାହାକାଳରେ ଯେ ଶୁଭ ଅଶୁଭ
ଖନା ବୁଝାଇ କହେ ତାହା ସବ ।
ପୂର୍ବ ମାଠିଆରୁ ଖାଲଟି ଭଲ,
ଭରିବାକୁ ଯାଉଥିଲେ କେ ଜଳ ।
ପଛୁଁ ଡାକେ ଯେବେ ନିଜ ଜନନୀ,
ସମ୍ମୁଖ ଡାକରୁ ଶୁଭେ ସେ ଧ୍ୱନି ।
ମଲାଠାରୁ ଜୀବନ୍ତ ଭଲ ଅଟେ,
ଯେବେ ମରିବ ସେ ଅନ୍ତ ନିକଟେ ।
ବାମ ଶୃଗାଳରୁ ଉତ୍ତମ ଡାହାଣ
ଯେବେ ଫେରି ସେ ଚାହେଁ ପୁଣ ପୁଣ ।
ବନ୍ଧାଠାରୁ ଖୋଲଟି ଅଛୁ ଲେଖି
ଗୋମାତା ଯେବେ ଚାହେଁ ମୁଣ୍ଡଟେକ ।
ଯାହାକାଳେ କ୍ରନ୍ଦନ ଧ୍ୱନି ମନ୍ଦ,
ବାମେ କାନ୍ଦିଲେ ହୁଅଇ ଆନନ୍ଦ ।

୮ । ବାଢ଼ ଠୁକୁ ଠୁକୁ କାନ ନଡ଼କା,
ବାଟେ ଦ୍ୱିଜବର ଦେଖିବ ଏକା ।
ଚାଆକେ ଯୋଗୀ, କୋଶକେ ତେଲ
ପୋତା କହେ ଆଜ ନ ଯାଆ ଫେଲ ।

୯ । ବ୍ରାହ୍ମଣୀ ରଣ୍ଡୀ, ହଂସମୁଖ ମୁଣ୍ଡୀ
ଦନ୍ତୁର ଗାଣ୍ଡୀ, ଭୁଛାହାଣ୍ଡୀ
ଏମାନଙ୍କୁ ଦେଖି, ନ ଯିବ ଦାଣ୍ଡୀ ।

୧୦ । ମାର୍ଜାର ଯେବେ କରୁଥିବେ କଳ,
ଆଗକୁ ପାଦେ ନ ଯିବଟି ଚଳି ।
ପୃଷ୍ଠବନ୍ତ ହେଲେ ଆପଣା ନାଶ,
ନ ଯିବଟି କେବେ ଘରୁ ବାହାର ।
କରୁଥିଲେ ନଜ ମାଡା କାରଣ,
ଅକାଳ ବୃଷ୍ଟି ହୋଇଲେଟି ପୁଣ,
ସୂତକ, ମୃତକ, ଘଟିବ ଯେବେ,
ଅନୁକୂଳ କର ନ ଯିବ କେବେ ।
୧୧ । ଭେଟିବ ଯେବେ ସମ୍ମୁଖେ କାର୍ପାସ,
ରଜକର ହସ୍ତେ, ମଳନ ବାସ,
ମାଂସ ବନ୍ଧି, ଯୋଗୀ ହସ୍ତରେ ଥାଳ,
ନଜ କୁଟୁମ୍ବରେ ମନ ଜଞ୍ଜାଳ,
ଯାଉଥିଲେ ତେଲ ପସରା ମୁଣ୍ଡେ,
କଣା ଜନ ପୁଣି ଦେଖିଲେ ଦାଣ୍ଡେ,
ଏତକ ଲକ୍ଷଣେ ଚଳିଲେ ନର,
ବହୁ ସତ କାର୍ଯ୍ୟ ହୁଏ ବଫଳ ।
୧୨ । କୁଆ ବୋବାଏ, ଗୃହେ ନ ବସେ,
ଚଷ ବୁଡ଼ଯାଏ ଗ୍ରେମ ନ ଦଶେ ।
ଚ ଳୁ ବୋଳକ ଉଷା,
ସବୁ ଗ୍ରହଯାକ ଥାଇ ବୋଇଲେ
ଆମେ ସେତେବେଳେ ମୂଷା ।
୧୩ । ପୂର୍ବେ ଅର୍ଦ୍ଧାକୃ ପଶ୍ଚିମେ ରୋଇ (ଇନ୍ଦ୍ରଧନୁ)
ନଶ୍ଚୟ ମେଘ ବରଷିବ ଯାଇ ।

---

## (ଖ) କୃଷି ବଚନ

୧ । ନଈଁ ପଡ଼ବା ପୂର୍ବ ବୃଷ, ଛତା ଘେନ ବୁଲ ଅଧାବୃଷ,
ପିଣ୍ଡାରେ ବସି ଯେ ପଚ୍ଛରେ ବୃଷ,
ତା'ର କାହିଁ ପାଇଁ ବୃଷରେ ଆଶ ?

୨ । ହଳ, ହଉଡ଼ା ନାହିଁ ଯେବଣ ଚଷା,
ଛଦନ ନ ଥାଇ ବୁକୁ ଭରସା,
କହେ ଦନାଇ, ଏ କାହାକୁ ଆଶା ?

୩ । ଚୈତ୍ରେ ଚଷ, ସୁନା କଷ;
ବୈଶାଖେ ଚଷ, କୁଟୁମ୍ବ ପୋଷ;
ଜ୍ୟେଷ୍ଠେ ଚଷ, ରଜା ପୋଷ;
ଆଷାଢ଼େ ଚଷ, ବେଲହୁଁ ଖସ ।

୪ । ଜଣ ମୁଠି, ଆଡ଼ ଦମୁଠି, କଆଁଶ ମଝିରେ ପୋତିବୁ କାଠି,
ଖଲରେ ରହିବ ପାଣି ସମାନ
ପର୍ବତ ଶିଖରେ କରିବ ଧାନ,
ଯେବେ ନୋହିବ ତହିଁରେ ଧାନ,
ତେବେ କାଟିବ ତାଙ୍କର କାନ ।

୫ । ଚୂନ ଠାଣ ନାଶ, ଲୁଣ ଠାଣ ମାଛ,
ଗୁଆ ଠାଣ ପାନ, ବୁଆ ଠାଣ ଧାନ ।

୬ । ଖାଳ ଖଢ଼ୁଡ଼ା ଚାକଟ ଗୁଆ,
ପୋତ ନ ପୋତ ହୋଇବ ଠିଆ ।

୭ । ଖେଦୁଅ ପାଣି ପକା ହାଣି,
ଆଶ୍ୱିନ ପାଣି ବନ୍ଧା ଠାଣି,
ନ ମାନବୁ ଯଦ୍ଧ ହୁଣ୍ଡା ଚଷା
ଶେଷରେ ହେବୁଟି ଫସର ଫସା ।

୮ । ହାତେ ଗୃଖଣ୍ଡେ ଖୋଳବ ଗାତ,
ପଚର ଖଣ୍ଡିକୁ ନ ଦେବ ହାତ ,
ଗୃଖଣ୍ଡେ ଗୁଡ଼ ଘଙ୍କିବ ଭଣ୍ଡା
ତେବେ ଦେଖିବ କଦଳୀ ପେଣ୍ଡା ।

୯ । କଦଳୀର ପୁଅ, ବାଉଁଶର ନାତି,
ଆପଣା ଇଚ୍ଛାରେ ବଢ଼ାନ୍ତି ଜାତି ।

୧୦ । ବହଳ କପା, ପାତଳ ବୃଷ,
ପିଲାକୁ ଅନୁଢ଼ଶାଳେ ଧଇଲେ କାଣ
କହେ ଦନାଇ ବାଣ,
ଏଥେ ନାହିଁ କରିବୁ ଆଣ ।

୧୧ । ଚଇତ୍ରେ ଗୋଟେ, ବଇଶାଖେ ମୁଠେ
ଜ୍ୟେଷ୍ଠ ମାସରେ ହାରେ, ଆଷାଢ଼େ ଘରେ,
ଚଷା ହାଇ ଶୁଣରେ, ମଲ୍ଲୀଫୁଲର ଗୁଣରେ ।

୧୨ । ଷାଠିଏ ଗାର ଚୂଳା, ତାର ଅଧା ମୂଳା
ତାର ଅଧା ଧାନ, ତାର ଅଧା ପାନ ।

୧୩ । ଆଗେ ବୁଣ ପଛେ ବୁଣ,
ଗର୍ଭଣାକୁ ଟୂଣ ଟୂଣ ।

୧୪ । ଅଳ୍ପ ବୃଷ, କୁଟୁମ୍ବ ପୋଷ,
ବହୁତ ବୃଷ, ସର୍ବନାଶ ।

୧୫ । ବୃହୁଁ ବୃହୁଁ ଗଲା ଜ୍ୟେଷ୍ଠ
କଣ୍ଠା ଅଳସରେ ଚଷା ନଷ୍ଟ ।

୧୬ । ବୈଶାଖ ଜ୍ୟେଷ୍ଠ ଖରାକାଳେ,
ଧାନ ପକାଇଲେ ଟେକାଚଳେ
ଚଷା କହେ ଶୁଣୁଣୀଲୋ !
ସୁନା ଲଗାଇବୁ ବେକଚଳେ ।

(ଗ) ବୈଦ୍ୟ ବଚନ ଓ ଠୁଣୁଠୁଣୁକା ।

୧ । ମୁଣ୍ଡରେ ପଗଡ଼ି, ପାଦରେ ତେଲ
ବଇଦ ସଙ୍ଗରେ କରିବ ଗେଲ ।

୨ । ଅନ୍ତେ ତିକ୍ତ ଦନ୍ତେ ଲୁଣ,
ଘୃତ ଖାଇବ ତିନ କୋଣ ।

୩ । ଖାଇବ ପିଠା, ଗାଇବ ଗୀତା,
ତେବେ ଯାଇଁ ହେବ ଜଗତଜିତା ।

୪ । ବଇଦ, ଗୁଣିଆଁ ବାଡ଼ିକୁ ବଢା ।

୫ । ଖାଇ ବସିଲେ ବଢ଼ଇ ପେଟ,
ଖାଇ ଖାଇଲେ ଯମର ଭେଟ,
ଖାଇ ଶୋଇଲେ ବଢ଼ଇ ଆୟୁ,
ଖାଇ ଧାଇଁଲେ ବଢ଼ଇ ବାୟୁ ।

୬ । ହରିଡ଼ା, ବାହାଡ଼ା, ଅଁଳା କଷି,
ଚାଲୁ ଖାଉଥାନ୍ତି ଋଷିଏ ବସି ।

୭ । ହେକ ରଖି ଖା', ହେକ ଦେଖି ଖା'
ଚଉଷଠି ବ୍ୟାଧି ପାଖ ନ ଯା' ।

୮ । ଖାଇ ମୁତେ, ମୁତି ଖାଏ,
ତା ପଇସା କ ବଇଦ ନିଏ ?

## (ଘ) ଗୋରୁଗାଈ

୧ । ଜାଣ ନ ଜାଣ ଝାମ୍ପୁଳ ଆଣ,
ଖାଡ଼ଆ ଶିଙ୍ଗା ସବୁଠୁ ଟାଣ,
ଯେବେ ଆଣିଥିବୁ ବେଣିଆ ରସି,
ନାନ୍ଥିବୁ ହିଡ଼ ମୁଣ୍ଡରେ ବସି ।
୨ । ଆଗେ ବୃନ୍ଦ, ପଛେ ଗୃନ୍ଦ,
ତାକୁ ଦେଖି ମଝିଖୁଣ୍ଟରେ ବାନ୍ଧ ।
୩ । ପେଟେ ଉଚ ଗାଣ୍ଡ, ପେଟେ କୁଣ୍ଡା ଖାଇ,
ତା'ଠାରୁ ଦୁଧ ପାଇ ।
୪ । ଖଲଆ କୋଇଲ ପାଟଳାରେ, ଦେଖ ମୋର ବୃଳ,
ତୁ ମୁଁ ଦୁହେଁ ସାଥି ହୋଇଲେ,
ଗୋସେଇଁ ଖାଇବା କାଳ ।
୫ । ଶିଙ୍ଗ ସରୁଆ, ଲଙ୍ଗୁଡ଼ ମୋଟା,
ମାଗଣା ଦେଲେ ନ ଆଣିବୁ ବେଟା ।

## (ଙ) ବଷା

୧ । ଚନ୍ଦ୍ର ମଣ୍ଡଳ ମଧ୍ୟେ ତାରା,
ମେଘ ବରଷଇ ମୁଷଳ ଧାରା ।
୨ । ଉଇଁ ନ ଦଶେ, ଦସି ପଶେ,
ଉତ୍ତର ମେଘ ଦକ୍ଷିଣେ ଆସେ,
ସଜ ଗୋବରରେ ଅଂସାଇ ବସେ,
ଡାକ ବୋଲେ ପୃଥା ନଷ୍ଟେ ବରଷେ ।
୩ । ମେଘ ଧଇଲେ ଭଣ୍ଡାର କୋଟଣ,
ବରଷା ହୁଏ ତତକ୍ଷଣେ ।

୪ । ଳକଡ଼ା କଣିଆ ବହଳ ବାଆ,
ମୂଳ ଲେଉଟାଇ ଦେ'ଲେ ମା ।
୫ । ଚୂଳରେ ବଢ଼ିଥିଲେ ମୂଳରେ ଫଳେ ।
୬ । ଦୁଧର ବାଛୁରି, ପାଣିର ଧାନ,
ନୋହିଲେ କାଟିବୁ ଡାକର କାନ ।

---

## ପ୍ରହେଳିକା (ନାଁ ଦେବା)

୧ । ଯାଉଥିଲି ଉତ୍ତର, ଦେଖିଆସିଲି ଫଳ ଉପରେ ପତର ।
(ସପୁରି)

୨ । ରଜାଘର ପଲେ (ଗୋଟେ) ଗାଈ; ସବୁ ପାହିଲାକୁ ଗୋଟିଏ ନାହିଁ । (ତରା)

୩ । ବୁଣିଲି ଧନଆ, ଉଠିଲା ବରି,
ସହସ୍ର ପାଠୁଆ ଗଣି ନ ପାରିଲେ, ମୂରୁଖ ବୁଝିଲେ ଶାଲ ।
(ତରା)

୪ । ଏଠି ଅଛୁ, ସାତ କଆବାଡ଼ ଡେଇଁ ବୁଲୁଛୁ । (ପବନ)

୫ । ଏଠି ଅଛୁ, ଏଇଠି ନାହିଁ । (ପବନ)

୬ । କଳା କଳା ଝଣ୍ଡିକ, ଶୁଖଇ ନାହିଁ । (ଜଭ)

୭ । ସ୍ୱର୍ଗରୁ ପଡ଼ିଲା ପିଲାଟିଏ, ତା ମୁଣ୍ଡରେ ଟୋପିଟିଏ ।
(ଚାଳ)

୮ । ବାପ ପୁଅ ଦୁହେଁ ଗାଧୋଇ ଆସିଲେ,
ଚାଟିଏ ଭାତ ଖାଇ ନ ପାରିଲେ । (ଲୁଣ)

୯ । ଟିକ ଚଢ଼େଇ, ଟିକକ ପାଣିରେ ବୁଡ଼ ମରଇ । (ଲୁଣ)

୧୦ । ଏତେ ବଡ଼ ଭେଣ୍ଡା ମରୁଛି, କେହି କାନ୍ଦୁ ନାହାନ୍ତି ।
ଏତେ ବଡ଼ ଖଟ ପଡ଼ୁଛି, କେହି ଶୋଇ ନାହାନ୍ତି ।
ଏତେ ମଲ୍ଲୀଫୁଲ ଫୁଟିଛି, କେହି ତୋଳୁ ନାହାନ୍ତି । (ତାରା)

୧୧ । ହରଡ଼ ଚଢ଼େଇ ନରଡ଼ ପକ୍ଷୀ
କେଉଁ ଚଢ଼େଇର ଛଅଟା ଆଖି । (ନଡ଼ିଆ)

୧୨ । ସରଟି ସମତୁଲ, ଫିଟାଇ ଦେଲେ ମଲ୍ଲୀଫୁଲ । (ନଡ଼ିଆ)

୧୩ । ଛାଟିଆଟି ଗୋଲଗାଲ, ଭାଙ୍ଗି ଦେଲେ କଇଁଫୁଲ ।(ନଡ଼ିଆ)

୧୪ । ଶଙ୍ଖ ପୋଖରୀ, ପଙ୍କ ନାହିଁ; ଜାଲ ପକାଇଲେ ମାଛ ନାହିଁ ।
(ନଡ଼ିଆ)

୧୫ । ନନ୍ଦ ସେ ପାଖରେ ଡାକୁଛି ରାଣୀ,
କା ଘରେ ଅଛି ଝିଅ ତୋରାଣୀ । (ନଡ଼ିଆ)

୧୬ । ଟିକି ବାଛୁରୀ ବେକରେ ପଘା । (ଛୁଞ୍ଚି)

୧୭ । ରଙ୍ଗ ରଙ୍ଗତା, ପାଣି ଦେଲେ ଗଛ ମରି ଯାଆନ୍ତା । (ଚୂନ)

୧୮ । ଦେଖିବାକୁ ସୁନ୍ଦର, ଖାଇବାକୁ ପିତା । (କଲରା)

୧୯ । ହଳଦୀ ଗୁରୁ ଗୁରୁ ରାମ ରାଉତ,
ତା ପାଖକୁ ଗଲେ ମାଡ଼ ବହୁତ । (ବିରୁଡ଼ି)

୨୦ । ଗୋଟିଏ ଗୁଜୁଳରେ ଘରଯାକ ତତା । (ଢ଼ିବ୍ରୀ)

୨୧ । ଯାଉଥିଲି ଓପରକଣା,
ଏକା ଗଛକେ ଦେଖି ଆସିଲି
କପା, କଦଳୀ, ବଡ଼ଚଣା ।(ଶିମ୍ବଳୀ)

୨୨ । କଞ୍ଚା ନଚପଚ, ପାଚିଲେ ଟାଣ ।
ଯିଏ ନ କହିବ, ତା'ର କଉଁଶ ଗଣ । (ଦାଣ୍ଡି)

୨୩ । ଗଛ ଡିଙ୍କିପର, ପତ୍ର କୁଲା ପର
କଞ୍ଚାରେ ଯଜ ପର, ପାଚିଲେ ମହୁ ପର । (କଦଳୀ)

୨୪ । ଏ ଘରେ ହଡ଼ା ମଲା, ସେ ଘରକୁ ବାସନା ଗଲା । (ପଣସ)

୨୫ । ଟିକ ଟିକ କଣ୍ଢା କର୍ପୂରର ବାସ । (ପଣସ)

୨୬ । ହଳଦୀ ଗୁରୁ ଗୁରୁ ଗମ ଗଜଡ,
ତାହାର ଗୁଡ଼ଏ ଛୁଆ ବଡ଼ୁଛ । (ପଣସ)

୨୭ । ବୁଣିଲ କଳାକଟ, ଉଠିଲ ଧଉ,
ଫୁଲ ଫୁଟିଗଲ ଲବଙ୍ଗ ପଉ,
ବେଲ ସମତୁଲ ଫଳିଲ ଫଳ,
ଏ କଥା କହଲେ, ଛୁଛ ବଜଲ । (ବାଇଗଣ)

୨୮ । ଆଗରେ ଦେଉଳ ଦଶୁଛି,
ମାଳ କେଉଁ ବାଟେ ପାଣି ଦେଉଛି । (ପଇଡ଼)

୨୯ । ଅମଞ୍ଜ ମଞ୍ଜା, ମଞ୍ଜି ନାହିଁ ତାର ଭୂଇଁରୁ ଗଜା । (ଛତୁ)

୩୦ । ଅମଞ୍ଜି ମଞ୍ଜା, ମଞ୍ଜି ନାହିଁ ତାର ପଥରୁ ଗଜା (ହେମକେଦାର)

୩୧ । ଗଛ ନଡ଼କା ପତର ବଙ୍କା,
ତା ଫଳଟି ଖାଣ୍ଟିଏ ଟଙ୍କା । (ଧାନ)

୩୨ । ଖଡ଼ ଗୋଟାଳ, ମହୀ ପଟାଳ, ଦୂରକୁ ଦଶଇ ଲାଲ,
କେଉଁ ବଣିଆଣୀ ଗଢ଼ି ଦେଇଛି ଶହେ ଟଙ୍କାର ମାଲ ।
(ସୂର୍ଯ୍ୟ)

୩୩ । ଗୋସେଇଁ କହୁଲେ, ଶୁଣ ଭେଣ୍ଡିଆ,
ଫୁଲ ଫୁଟିଅଛି ଗଜା ମୁଣ୍ଡିଆ,
ଭେଣ୍ଡିଆ କହୁଲେ, ଶୁଣ ଗୋସାଇଁ,
ଫୁଲ ଫୁଟି ଅଛି ପତର ନାହିଁ । (ସିଜୁ)

୩୪ । ଏ ପାଖରେ ବାଡ଼, ସେ ପାଖରେ ବାଡ଼
କୁମ୍ଭୀର ପଡ଼ଲେ ଧଡ଼ପଡ଼ । (ଖଇ ଫୁଟିବା)

୩୫ । ବରଷକେ ଥରେ ଖାଏ,
ମୁହଁ ମାଡ଼ ପଡ଼ଥାଏ । (ଗୁଳ)

୩୬ । ଏକ କାଳୀ ଗାଈ ଶୋଇଛି,
ସହସ୍ର ବାଛୁରୀ ପିଉଛି । (ମଥାନ)

୩୭ । ସବୁ ଗାଈ ପହଁରି ଗଲେ,
ଗେଡ଼ ଗାଈ ପହଁରି ନ ପାରିଲା । (ପଥର ବାସନ)

୩୮ । ସ୍ୱର୍ଗରୁ ଅଇଲା ଡେଙ୍ଗା ହାଣ୍ଡି,
ତା ଅଇଁଠା ସମସ୍ତେ ଖାଆନ୍ତି । (ଢେଙ୍କି),

୩୯ । ଠକ ଠକସା, ତିନ ମୁଣ୍ଡ ଦଶ ଗୋଡ଼,
କହୁ ଦେବୁ ମଜସା । (ଜଣେ ଲୋକ ଏବଂ ହଳେ ବଳଦ)

୪୦ । ଏଣୁ ଯାଉଥିଲେ ବାପ ପୁଅ,
ସେଣୁ ଆସୁଥିଲେ ଏକା,
ବାପ ପାହାକୁ ନମସ୍କାର,
ତାକୁ ପୁଅ ଖୋଡ଼ଚଲେ ପକା । (ବସୁଦେବ ଶ୍ରୀକୃଷ୍ଣଙ୍କୁ
ନେଇ ଯାଉ ଥିବା ସମୟରେ ଉଗ୍ରସେନ ସହିତ ସାକ୍ଷାତ)

୪୧ । ପଇସା ଉପରେ ପଇସା
ଝୁଣ୍ଟି ନାହିଁ ଘର ତିଆରି ହୋଇଛି,
କେଉଁ କାରିଗର ମଜସା ? (ଆକାଶ)

୪୨ । କାଳିଆ କାଳିଆ ଗାଈ ଦୁଇଟି,
କାଳିଆ ଘାସ ଖାଆନ୍ତି ।
ନକଡ଼ାରେ ପାଣି ପିଇ,
ନ କଡ଼ାରେ ଶୁଅନ୍ତି । (ବାରିକର କ୍ଷୁର ଓ କଞ୍ଚି)

୪୩ । ଜଳକୁ କଣ୍ଢେ, ଶତ୍ରୁକୁ ଆଣ୍ଢେ,
ସାଙ୍ଗ ହୋଇ ଥାଏ ଜଣେ,
ହଜ ପଛକେ ଗବ ଡମିର
ତାକୁ ନ ଛାଡ଼ିବ କ୍ଷଣେ । (ବାଡ଼ି)

୪୪ । ଠୋ ଠୋ ଢକ ଗଇଁଠା,
ଠାକୁର ଖାଆନ୍ତି କାହା ଅଇଁଠା ? (ବାଛୁରୀ ଅଇଁଠା, କ୍ଷୀର)

୪୫ । ଦଶ ଶିର ତାର ଦେହେ, ନୁହେଁ ରାବଣାର,
ଦେହଯାକ ଜାଲ ତାର ନୁହେଁ, ଜାଲୁଆର,
ଚୁଣୁଚ୍ଚୁଣୁ ହୁଏ ସେତ ନୁହେଁ ନୃତ୍ୟକାରୀ,
ଆମର ଆଜ କରିଥିଲୁ ସେହି ତରକାରୀ । (ଜହ୍ନି)

୪୬ । କେଁ କେଁ କେଁ କରଟ,
ପୋଖରୀ ଭିତରେ ହେଉଛି ନାଟ,
ମୁନିଆ ଚଢ଼େଇ ଧରିଛି ଟାଣି, (ଘୁଷୁରି ଗୋଡ଼ଆ ଧରିଛି ଟାଣି)
ଶୁଖିଲା କାଠରୁ ବହୁଛି ପାଣି । (ତେଲଘଣା)

୪୭ । ବାପା ବଙ୍କା, ପୁଅ ସଳଖା,
ନାତି ଟୋକା ଉଡ଼ି ତ ରକ (ଧନୁଶର)

୪୮ । କାଠର ବାଛୁରୀ ପଥର ଖାଏ,
ଯେତେ ଦୁହଁ ଥିଲେ ପହ୍ଲାଉ ଥାଏ । (ଚନ୍ଦନ)

୪୯ । ଅଭୁତ ଭୂଷଣ ଜଟାଧାରୀ,
ବାବୁ ଶୋଇଛନ୍ତି ପାଳ ପାରି । (ପାଣିକଖାରୁ)

୫୦ । ପୋଖରୀ ଗୁରିପିଠି ବୁଣିଲା ଧଣିଆ,
ତନୋଟି ବରକୁ ଷୋଳ କନିଆ । (ପଶାକାଠି ଓ ଗୋଟି)

୫୧ । ଅନ୍ଧାରେ ସନ୍ଧ କାଟ୍ଟି,
ପୁରୁଆ ପଶିଲୁ କାଟ୍ଟି,
ଧନ୍ୟ ହେ। ବନ୍ଧାଣିପଣ,
ଛାଡ଼ ଯାଉ ମୋ ଜୀବନ । (ମଣ୍ଡାପିଠା)

୫୨ । ଗୋଟିଏ ଉପରେ ଗୋଟିଏ ବସେ,
ଆଉ ଗୋଟିଏ ମାଳ ଜପି ଆସେ,
ତିନି ଜଣ ଯାକ ହୋଇଲେ ରୁଣ୍ଡ,
ତିନି ଜଣଙ୍କର ସତର ମୁଣ୍ଡ ।(ରାବଣ, କାର୍ତ୍ତିକ ଓ ମୟୂର)

୫୩ । ପଠାକୁ ପଠା, ପଠାତଳେ ଯେଉଁ କମଳ ଲଠା,
ଦା ମାରି ଦେଲେ ଦାଇବ,
ଏମିତି ସୁନ୍ଦର କୁସୁମ ଫୁଲ
ତୋଳି ଆଣି କିଏ ନାଇବ ? (ଛତୁ)

୫୪ । ବାଉବାଟି ତୋଠା,
ଫୁଲ ଫୁଟେ ଗୋଠା ଗୋଠା । (ଜହ୍ନ ଛତୁ)

୫୫ । ଯାଉଥିଲି ଢେଙ୍କାନାଳ,
ଢେଙ୍କି ପଡ଼ିଥିଲା ମାଳକୁ ମାଳ,
କେଉଁ ସବା ଖାଇ ମନ୍ତର କଲା,
ଢେଙ୍କିଶାଳରେ ପାଣି ପଶିଲା । (ନଡ଼ିଆ)

୫୬ । ମୁଁ ଥିବି ଡାଳେ, ତୁ ଥିବୁ ନାଳେ,
ଭେଟାଭେଟି ହେବା ସେଷେଇ ଶାଳେ । (ମାଛ, ଓଉ)

୫୭ । ବଣରେ ଜନ୍ମିଲି, ବଣରେ ବଢ଼ିଲି,
ବଣୁଆଣୀ ମୋର ମା,
ପିଲାଟି ଦିନୁ କି ଦୋଷ କଲି, ନଖକରେ କୁରାଢ଼ୀ ଘା ।
(ଖଜୁରିଗଛ)

୫୮ । ଉଇଁଚ ଫୁଟିଲା, ମଞ୍ଜି ନାହିଁ ଗଛ କପର ଉଠିଲା ? (ଛତୁ)

୫୯ । କାଦୁଅ ବଲବଲ ମୁଣ୍ଡି ସାହାଡ଼ା,
ଏ ବାଟେ ଗଲା ପଦ ବେଢ଼େଇ । (ଘୁଷୁରି)

୬୦ । ଆଷାଢ଼ରେ ଜନ୍ମ ତାର, ଭାଦ୍ରରେ ମରଣ,
ତିନ ଧନ ତିନ ଗତି, ଜଳରେ ଶୟନ । (ନଳତା)

୬୧ । ଆସିଲ କ ଭାଇ, ବସିଲ କ ଖଟେ,
ତେର ମୁଣ୍ଡ ଦଶ ଗୋଡ଼ ଦେଖିଲ କ ବାଟେ ?
(ଜଣେ ଚାଷୀ ଓ ହଳେ ବଳଦ)

୬୨ । ସ୍ୱରଗ ସୁନ୍ଦର ବେଣ୍ଟିଆଟା,
ହାତଗୋଡ଼ ନାହିଁ ଖଣ୍ଡିଆଟା । (ଶାବଳ)

———

ମୁଦ୍ରକ—ଶ୍ରୀ [illegible],
ଶ୍ରୀ ରାଧାନାଥ କୋ-ଅପରେଟିଭ୍ ପ୍ରେସ—କଟକ, ୧୯୫୯ ।